ତାହା ନିଶ୍ଚୟ ଲିଖିତ ଭାବରେ ଦେଇଥିବେ, କିନ୍ତୁ ଏ ବିଷୟରେ କେତେକ ସଂକ୍ଷିପ୍ତ ଟିପ୍ପଣୀ ସେ ରଖିଯାଇଛନ୍ତି । ୧୮୮୭ ଫେବୃୟାରୀ ୨୨ ତାରିଖର ଲେଖା ପ୍ରଣିଧାନ ଯୋଗ୍ୟ; 'ପବ୍ଲିକ୍ ସର୍ଭିସ୍ କମିଶନ ଆଗରେ ସାକ୍ଷ୍ୟ ଦେଲି ଏବଂ ତଦ୍ୱାରା ଯେ ନିଜ ତଣ୍ଟି କାଟିଲି ତାହା ଜାଣି ପାରିଲି ନାହିଁ' । ମାସକ ପରେ ରାଜସ୍ୱ ପରିଷଦକୁ ତାଙ୍କର ପଦୋନ୍ନତି ହେଲା ଲାଟଙ୍କ ତଳକୁ ଏହା ହେଉଛି ସର୍ବୋଚ୍ଚ ଶାସକୀୟ ପଦବୀ । ସେ ଦେଇଥିବା ମତ ଯେ ବଙ୍ଗସରକାରଙ୍କ ଅମନୋନୀତ ହୋଇ ନଥିଲା ଏହା ତାହାର ସୂଚନା ଦିଏ ।

କିନ୍ତୁ ଅପ୍ରେଲ୍‌ରେ ଜଣେ ଭାରତୀୟଙ୍କ ଦ୍ୱାରା ପରିଚାଳିତ ସମ୍ବାଦପତ୍ରରେ ତାଙ୍କ ଉପରେ ଭୀଷଣ ଆକ୍ରମଣ ହେଲା । ଜୁନ୍ ମାସରେ ଆଉ ଥରେ ସେ ସେହିପରି ଆକ୍ରାନ୍ତ ହେଲେ ଯାହାର ପରିଣାମ ସମ୍ପର୍କରେ ସୂଚନାତ୍ମକ ଟିପ୍ପଣୀ ଦେଇଛନ୍ତି, ଜୁଲାଇ ୧୪ ରେ 'ଭାରତ ସରକାରଙ୍କ ଆଦେଶ ଅନୁଯାୟୀ ପରିଷଦରୁ ବାହାରିଗଲି' ଏବଂ ଏହାର ଠିକ୍ ପରେ ଆଉ ଏକ ଉଲ୍ଲେଖ ଅଛି 'ଜୁଲାଇ ୨୦ରେ ପୁନର୍ନିଯୁକ୍ତିର ପ୍ରତିଶ୍ରୁତିପତ୍ର' । ଏହି ଘଟଣା ସମ୍ପର୍କରେ ଆଉ କିଛି ପ୍ରମାଣ ସେ ରଖିନାହାନ୍ତି । ଏଣୁ ଏ ବିଷୟରେ କେବଳ ଅନୁମାନ କରାଯାଇପାରେ ଯେ କମିଶନ ଆଗରେ ତାଙ୍କର ସାକ୍ଷ ସେତେବେଳେ ସ୍ଥାନୀୟ ରାଜନୀତିଜ୍ଞମାନଙ୍କୁ ଅସନ୍ତୁଷ୍ଟ କରିଥିଲା ଏବଂ ସେତେବେଳେ ରାଜନୈତିକ ଆନ୍ଦୋଳନକୁ ଶାନ୍ତ କରିବା ପାଇଁ ଭାରତ ସରକାର ତାଙ୍କୁ ନିମ୍ନ ପାହ୍ୟାକୁ ଖସାଇ ଆଣିଥିଲେ - ଏଠାରେ ଉଲ୍ଲେଖଯୋଗ୍ୟ ଯେ ବଙ୍ଗସରକାର ତାଙ୍କର ପୁନର୍ନିଯୁକ୍ତିର ପ୍ରତିଶ୍ରୁତି ଦେଇଥିଲେ ।

୧୮୮୭ ଅଗଷ୍ଟରେ ତାଙ୍କୁ ପୁଣି ଥରେ ଖସାଇ ଭାଗଲପୁର କମିଶନର କରାଗଲା । ସେଥିରେ ଦୁଇବର୍ଷ ରହି ଅପ୍ରେଲ ୧୮୮୯ରେ କଲିକତାକୁ ଫେରିଲେ ଏବଂ ପୁଣି କେତେବର୍ଷ ରାଜସ୍ୱ ପରିଷଦରେ କାମ କଲେ । ତାହାପରେ ସେ ପ୍ରଧାନତଃ କମିଶନର ରୂପେ କଲିକତାରେ ରହିଲେ ; କିନ୍ତୁ ମଝିରେମଝିରେ ରାଜସ୍ୱ ସମ୍ପର୍କୀୟ ସରକାରୀ ବିଲ ପ୍ରସ୍ତୁତ କରିବାରେ ଏବଂ ପୋଲିସ୍ କମିଶନର ପ୍ରେସିଡେଣ୍ଟ ରୂପେ କାର୍ଯ୍ୟ କରୁଥିଲେ । ୧୮୯୧ର ଗ୍ରୀଷ୍ମକାଳରେ ସେ ଛ'ମାସ ପାଇଁ ଇଂଲଣ୍ଡ ଫେରିଲେ - ତାହା ତାଙ୍କ ୩୫ ବର୍ଷ ଚାକିରିକାଳରେ ମାତ୍ର ୨ୟ ଥର ପାଇଁ ; କିନ୍ତୁ ନଭେମ୍ବରରେ କଲିକତାକୁ ଚାଲିଆସିଥିଲେ । ଶେଷ ୧୮ ମାସ ପ୍ରେସିଡ଼େନ୍‌ସି ଡିଭିଜନ୍‌ର କମିଶନର ରୂପେ କଟାଇ ମାର୍ଚ୍ଚ ୧୮୯୩ରେ ଅବସର ଗ୍ରହଣ କଲେ । ଏହିପରି ତାଙ୍କର ଚାକିରିକାଳ

ସରିଲା । ଏହାର ଶେଷ କେତେବର୍ଷ ଶିକ୍ଷା କମିଶନ ବ୍ୟାପାର ନେଇ ତିକ୍ତ ହୋଇ ଉଠିଥିଲା । ସ୍ତ୍ରୀ ଓ ପରିବାରରୁ ବିଚ୍ଛେଦ ଓ ନିଃସଙ୍ଗତା ଯୋଗୁଁ ତାଙ୍କୁ ଦୁଃଖ ଆହୁରି ଅଧିକ ହୋଇ ପଡ଼ିଥିଲା । ଭାରତରେ ଚାକିରି କରୁଥିବା ପ୍ରତ୍ୟେକଙ୍କୁ କେବେ ନା କେବେ ଏହିପରି ସହିବାକୁ ପଡ଼େ । ଏପରି ଏକ ଜୀବନୀମୂଳକ ବିବରଣୀରେ ସମାଲୋଚନା ଅଙ୍ଗୀଭୂତ ନୁହେଁ ; କିନ୍ତ ଏ ବର୍ଣ୍ଣନା ପଢୁଥିବା ପ୍ରତ୍ୟେକେ ନିଶ୍ଚୟ ଜାଣିଥିବେ ଯେ ଜନ୍ ବୀମ୍‌ସ ବ୍ୟକ୍ତିଗତ ମତାମତରେ ଅତ୍ୟନ୍ତ ଦୃଢ଼ ରହୁଥିଲେ ଏବଂ ଯେଉଁ ଉଚ୍ଚପଦସ୍ଥ କର୍ମଚାରୀଙ୍କ ମତକୁ ସେ ଗ୍ରହଣ କରୁନଥିଲେ, ସେମାନଙ୍କୁ ଆନନ୍ଦରେ ସ୍ୱୀକାର କରିଯିବାର ମନୋଭାବ ତାଙ୍କର ନଥିଲା ; ଯେଉଁ ମନୋଭାବ ଆଜିକାଲି ପରି ସେତେବେଳେ ମଧ୍ୟ ଆତ୍ମୋନ୍ନତି ପାଇଁ ଅତି ଆବଶ୍ୟକ ଥିଲା । ତାଙ୍କ ଲେଖାର ପ୍ରଥମ ଅଂଶରେ ତାଙ୍କ ଜେଜେଙ୍କୁ 'ଆଇନ୍‌ଜୀବୀ ବଦ୍‌ରାଗୀ ବୀମ୍‌ସ୍' ଭାବରେ ଯେପରି ବର୍ଣ୍ଣନା କରିଛନ୍ତି, ତାଙ୍କ ନିଜ ମନ ସେହିପରି ଉଗ୍ର ଓ ତୁଣ୍ଡ ପ୍ରଖର ଥିଲା । ତେଣୁ ଯେଉଁ ଉଚ୍ଚପଦସ୍ଥ ଅଫିସରଗଣ ତାଙ୍କର ଅତ୍ୟଧିକ ସ୍ପଷ୍ଟବାଦିତା ଓ ଅସମୟ ଆକ୍ଷେପୋକ୍ତିକୁ ସହ୍ୟକରିପାରନ୍ତି ନାହିଁ, ସେଇମାନଙ୍କର ସେ ଶତ୍ରୁ ହୋଇ ଉଠିଲେ । ତାଙ୍କ କର୍ମର ବିଭିନ୍ନ ସ୍ତରରେ ସାର ରିଚାର୍ଡ଼ ଟେମ୍ପଲଙ୍କ ସହ ତାଙ୍କର ସଘଂର୍ଷ ଏହାର ଅନ୍ୟ ଏକ ଉଦାହରଣ । ସେ ଏହାକୁ ଯେପରି ଅକପଟ ଭାବରେ ବର୍ଣ୍ଣନା କରିଛନ୍ତି, ସେଥିରୁ ବୁଝାଯାଏ ଯେ ଲାଟମାନେ ଯେତେ ଆତ୍ମାଭିମାନୀ ଓ ବିରକ୍ତିକର ସ୍ୱଭାବର ହୁଅନ୍ତୁ ନା କାହିଁକି ସେମାନଙ୍କ ବିରୁଦ୍ଧରେ ବିଦ୍ରୂପୋକ୍ତିର ପ୍ରୟୋଗ କରିବାର ବାସ୍ତବ ଫଳାଫଳ ସମ୍ପର୍କରେ ସେ ସମ୍ପୂର୍ଣ୍ଣ ଅବିହିତ ନଥିଲେ । କିନ୍ତୁ ଫିଲିପ୍ ମ୍ୟାନସନ ତାଙ୍କର 'ଦି ରୁଲରସ୍ ଅଫ୍ ଇଣ୍ଡିଆ'ରେ ଯେପରି ମନ୍ତବ୍ୟ ଦେଇଛନ୍ତି ତଦନୁଯାୟୀ ଜନ୍ ବୀମ୍‌ସ ଲାଟ ଗୋଷ୍ଠୀଟାକୁ ବାସ୍ତବରେ ଖାତିର କରୁନଥିଲେ । ସମ୍ଭବତଃ ୧୮୮୭ର ଦୁଃଖଦାୟକ ଘଟଣା ଓ ତା'ର ପ୍ରତିକ୍ରିୟା ଫଳରେ ସେ ତାଙ୍କ ବର୍ଣ୍ଣନା ଶେଷକରିବାରେ ଆଗ୍ରହୀ ହୋଇ ନଥିବେ ଏବଂ ଯଦିବା ସେ ବଞ୍ଚିଥାଆନ୍ତେ ତଥାପି ଯେଉଁ ଘଟଣାଗୁଡ଼ିକ ତାଙ୍କର ଅନ୍ୟଥା ଆନନ୍ଦଦାୟକ ଦୀର୍ଘ ଚାକିରି କାଳର ଶେଷ କେତେ ବର୍ଷରେ ଅନ୍ଧକାର ଘୋଟାଇଲା, ସେଗୁଡ଼ିକୁ ପୁଣି ମନେପକାଇ ଲିପିବଦ୍ଧ କରିବା ନିଶ୍ଚୟ ତାଙ୍କ ପକ୍ଷରେ ବିରକ୍ତିକର ହୋଇଥାନ୍ତା ।

ଜନ୍ ବୀମ୍‌ସଙ୍କ ବର୍ଣ୍ଣନା ମଧ୍ୟରେ ଗୋଟିଏ ବିଷୟ ପୂର୍ଣ୍ଣ ପ୍ରକାଶ ପାଇନାହିଁ । ତାହା ହେଉଛି ତାଙ୍କ ସମୟରେ ଭାଷାତାତ୍ତ୍ୱିକ୍ ଜଗତରେ ସେ ବେଶ୍ ପ୍ରସିଦ୍ଧି ଅର୍ଜନ କରିଥିଲେ । ଭାଷା ସମ୍ପର୍କରେ ତାଙ୍କର ଆଗ୍ରହ, ପ୍ରଥମ ଚାକିରି କାଳରେ ପାର୍ଶିଭାଷାରେ

ଦୁଇଟି ସୁନାପଦକ ପ୍ରାପ୍ତ ଓ ଭାରତରେ ଥିବା ସମୟରେ 'ଆଧୁନିକ ଭାରତୀୟ ଭାଷାମାନଙ୍କର ତୁଳନା' ପୁସ୍ତକର ପ୍ରକାଶ ବିଷୟ ସେ ବାରମ୍ବାର ଉଲ୍ଲେଖ କରିଛନ୍ତି । ୧୮୭୨ରୁ ୧୮୭୯ ମଧ୍ୟରେ ତିନିଖଣ୍ଡରେ ଏହା ପ୍ରକାଶିତ ହୋଇଥିଲା । ଏହା ପୂର୍ବରୁ ୧୮୬୭ରେ ଆଉଟ୍ ଲାଇନ୍ ଅଫ୍ ଇଣ୍ଡିଆନ ଫିଲଲଜି (ଭାରତୀୟ ଭାଷାତତ୍ତ୍ୱ ପରିଚୟ) ବହିଟି ପ୍ରକାଶିତ ହୋଇଥିଲା । 'ସେତେବେଳେ ଭାରତରେ ପ୍ରଚଳିତ ସମସ୍ତ କଥିତଭାଷାର ବିଜ୍ଞାନଭିତ୍ତିକ ସମ୍ପୂର୍ଣ୍ଣ ବିଶ୍ଳେଷଣ ପାଇଁ ପ୍ରଥମ ପ୍ରଚେଷ୍ଟା' ରୂପେ ଏ ବହିଟି ଗୃହୀତ ହୋଇଥିଲା । ଏ ବହି ବର୍ତ୍ତମାନ ଅନେକ ଅଂଶରେ ପୁରୁଣାକାଳିଆ ରୂପେ ବିବେଚିତ ହେଉଥିଲେ ମଧ୍ୟ ନିକଟରେ ଲକ୍ଷ୍ନୌରେ ଉର୍ଦ୍ଦୁରେ ଅନୂଦିତ ହୋଇଛି । ସେ ଉଭୟ 'ରୟଲ ଏସିଆଟିକ୍ ସୋସାଇଟି ଅଫ୍ ଗ୍ରେଟବ୍ରିଟେନ୍, ଏବଂ 'ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗଲ'ର ସଭ୍ୟ ଥିଲେ । ଏହି ଉଭୟ ବିଜ୍ଞ ଅନୁଷ୍ଠାନର ପତ୍ରିକା ଏବଂ ଇଣ୍ଡିଆନ୍ ଆଣ୍ଟିକ୍ୱାରୀକୁ ସେ ଅନେକଗୁଡ଼ିଏ ପ୍ରବନ୍ଧ ଦେଇଥିଲେ । ୧୮୯୧ରେ ତାଙ୍କ ପ୍ରକାଶିତ 'ବଙ୍ଗଳାଭାଷାର ବ୍ୟାକରଣ' ସେହି ପ୍ରଦେଶରେ ଶିକ୍ଷାନବିସ୍ ରୂପେ ଯୋଗ ଦେଉଥିବା ଆଇ.ସି.ଏସ୍.ମାନଙ୍କର ପାଠ୍ୟପୁସ୍ତକ ରୂପେ ୧୯୨୨ ପର୍ଯ୍ୟନ୍ତ ରହିଥିଲା । ତାଙ୍କର ଜଣେ ସହକର୍ମୀ ଓ ସମସାମୟିକ ' ଏ ଲିଙ୍ଗୁଇଷ୍ଟିକ୍ ସର୍ଭେ ଅଫ୍ ଇଣ୍ଡିଆ'ର ଲେଖକ ସାର୍ ଜର୍ଜ ଗ୍ରିଅରସନ ତାଙ୍କ 'ତୁଳନାତ୍ମକ ବ୍ୟାକରଣ' ସମ୍ବନ୍ଧରେ ଲେଖିଛନ୍ତି -

''ଏହି ବ୍ୟାକରଣରେ ଯେଉଁ ଜ୍ଞାନ ପ୍ରଦର୍ଶିତ ହୋଇଛି କିମ୍ବା ଏହି ଜ୍ଞାନର ପ୍ରୟୋଗଦ୍ୱାରା ଫଳାଫଳର ଯେଉଁ ବିଶୁଦ୍ଧତା ମିଳିଛି, କେଉଁଟି ଅଧିକ ପ୍ରଶଂସାଯୋଗ୍ୟ ତାହା ନିର୍ଣ୍ଣୟ କରିବା କଠିନ । ତାଙ୍କର ଲେଖନୀ ଥିଲା ଶାଣିତ ଏବଂ ଯଥାର୍ଥ । ଆବଶ୍ୟକ ମନେକଲେ, ସେ ଏହାର ସଫଳ ଉପଯୋଗ କରୁଥିଲେ ; କିନ୍ତୁ ନିଜର ପ୍ରଧାନ ଗ୍ରନ୍ଥମାନଙ୍କରେ ଅନ୍ୟାନ୍ୟ ଗବେଷକମାନଙ୍କର ଯେଉଁ ମତାମତ ସେ ଉଦ୍ଧାର କରିଛନ୍ତି, ସେଥିରୁ ଜଣାଯାଏ ଯେ ସରସ୍ୱତୀଙ୍କ ମହିମାର ଦୁଇଦିଗର ସେ ଅଧିକାରୀ ଥିଲେ । ନିଜ ଜ୍ଞାନର ବିରାଟ ଭଣ୍ଡାର ସମ୍ପର୍କରେ ଯଥାର୍ଥ ଆସ୍ଥା ଏବଂ ସେଇଧରଣ ଗବେଷଣାରେ ନିଯୁକ୍ତ ଥିବା ଅନ୍ୟମାନଙ୍କ ଆବିଷ୍କାର ପ୍ରତି ଅକୁଣ୍ଠ ସ୍ୱୀକୃତି । ପ୍ରଥମ ପ୍ରାମାଣିକ ମତାଧିକାରୀ ରୂପେ ସ୍ୱୀକୃତ ହେବାରେ ତାଙ୍କର ଦାବୀ ସୁପ୍ରତିଷ୍ଠିତ ଥିଲା ।''

ପ୍ରାଚ୍ୟ ଭାଷା ବିଶେଷକରି ପାର୍ଶି ଓ ସଂସ୍କୃତରେ ଆଗ୍ରହ ସାଙ୍ଗକୁ ଜର୍ମାନ୍, ଫରାସୀ, ଇଟାଲୀୟ ଓ ଅନ୍ୟ କେତେକ ୟୁରୋପୀୟ ଭାଷାରେ ମଧ୍ୟ ତାଙ୍କର କାମଚଳା

ଜ୍ଞାନ ଥିଲା । ଭାରତରେ ଚାକିରି କରିଥିବା ପ୍ରତ୍ୟେକଙ୍କୁ ଖୁବ୍ ଆଶ୍ଚର୍ଯ୍ୟ ବୋଧ ହେବ ଯେ କର୍ମକ୍ଷେତ୍ରର ଦୀର୍ଘ ଓ ଗୁରୁତର ଜଞ୍ଜାଳ ଭିତରେ ସେ ଭାଷା ଗବେଷଣର ଏତେ ଗଭୀରତା ମଧ୍ୟକୁ କିପରି ପ୍ରବେଶ କରିପାରୁଥିଲେ ।

ମୋ ବାପା ଭାରତରେ ୩୦ ବର୍ଷ ଚାକିରି ପରେ ୧୯୧୬ରେ ଅବସର ନେଲେ । ଅଧିକାଂଶ ସମୟ ସେ ଯୁକ୍ତପ୍ରଦେଶରେ କଟାଇଥିଲେ । ଛ' ବର୍ଷର ବ୍ୟବଧାନ ପରେ ମୁଁ ସେଇ ପ୍ରଦେଶରେ ସେଇ କାମରେ ଯୋଗଦେଲି । ଏହିପରି ସେହି ଚାକିରିରେ ପାରିବାରିକ ସମ୍ପର୍କ ୯୦ ବର୍ଷ ପର୍ଯ୍ୟନ୍ତ ରହିଲା । ଏହା ଖୁବ୍ ବଡ଼ କିମ୍ବା ଅପୂର୍ବ କଥା କିଛି ନୁହେଁ, କିନ୍ତୁ ଦୀର୍ଘସମୟବ୍ୟାପୀ ନିଶ୍ଚୟ । ଭାରତରୁ ଫେରିବା ପରେ ଯାଇ ମୁଁ ମୋ ମା'ଙ୍କ ନିକଟରେ ଥିବା ପୁରୁଣା ପାରିବାରିକ କାଗଜପତ୍ର ମଧ୍ୟରେ ଅଜାଙ୍କ ନିଜ ଜୀବନ କାହାଣୀଟି ପାଇଲି । କେତେ ବର୍ଷ ପରେ ଜଣେ ପୁରାତନ ବନ୍ଧୁ ଓ ଭାରତରେ ସହକର୍ମୀ ଫିଲିପ୍ ମ୍ୟାନସନ୍ ଭାରତୀୟ ସିଭିଲ୍ ସଂସ୍ଥାର ଇତିହାସ ସମ୍ପର୍କରେ ବହି ଲେଖୁଥିବାରୁ ଏଇ ଧରଣର ଦଲିଲ୍ ପତ୍ର ସବୁ ଧାର ମାଗିଲେ । ଅତି ଆନନ୍ଦରେ ମୁଁ ତାଙ୍କୁ ଏ ପାଣ୍ଡୁଲିପିଟି ଦେଲି । ଏହାର ସେ ଯଥେଷ୍ଟ ସାହାଯ୍ୟ ନେଇଛନ୍ତି । ଦୁଇଖଣ୍ଡରେ ପ୍ରକାଶିତ ତାଙ୍କର 'ଦି ମେନ ହୁ ରୁଲଡ୍ ଇଣ୍ଡିଆ' ବହିରେ ଏଥିରୁ ଉଦ୍ଧୃତିମାନ ସଂଯୋଜିତ ହୋଇଚି । ଏଇ ଅବସରରେ ଆନନ୍ଦ ସହ ମୁଁ ତାଙ୍କ ପ୍ରତି କୃତଜ୍ଞତା ଜଣାଉଛି, କାରଣ ତାଙ୍କର ଉତ୍ସାହ ଓ ଉପଦେଶ ବିନା ବର୍ତ୍ତମାନ ଏ ପୁସ୍ତକ ପ୍ରକାଶ ପାଇପାରି ନଥାନ୍ତା ।

ଶେଷରେ କଲିକତାର ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗଲର ସମ୍ପାଦକ ଡାଃ ମହାଦେବ ପ୍ରସାଦ ଯାହାଙ୍କୁ ମଧ୍ୟ ମୋର ଧନ୍ୟବାବ । ସେ ପୂର୍ବରୁ ମୋର ଅପରିଚିତ ଥିଲେ ମଧ୍ୟ ଖୋଜାଖୋଜି କରିବାରେ ବହୁକଷ୍ଟ ସ୍ୱୀକାର କରି ମୋ ଅଜା ତାଙ୍କ ସମୟରେ ସେହି ସୋସାଇଟିକୁ ଦେଇଥିବା ଭାଷାତତ୍ତ୍ୱ ଓ ପୁରାତତ୍ତ୍ୱ ସମ୍ପର୍କୀୟ ଅନେକ ଲେଖା (ବହୁ ସଂଖ୍ୟକ ଯାହା ଏଠାରେ ପ୍ରକାଶ କରି ହେବ ନାହିଁ)ର ବିବରଣୀ ପଠାଇଛନ୍ତି ।

('ଜଣେ ଶାସକର ସ୍ମୃତି'ରୁ ଗୃହୀତ)



# OPINION OF JOHN BEAMS ON DR. HUNTER

"About this time we received a visit from that vivacious but not very accurate writer, Dr. W.W. Hunter, who during a stay of seven days subjected me to such an unceasing fire of questions that on his departure I solemnly forbade any – one to ask me any more questions."

X X X

"Hunter's Orissa in two volumes, was the result of his visit. It is a clever, brilliantly written work though containing many inaccuracies. I supplied him with a mass of facts, and so did the Collectors of Cuttack and Puri, but he put all our contributions into an Appendix in small type and made very little use of them in the text of his work."

---

( Memoirs of Bengal Civilian, P - 197 )

# STARTING OF A NEW MARKET AT CUTTACK
## ( 1874 )

Meanwhile I was busy with improvements in the town of Cuttack. The old market, a strange, ill-arranged mass of low, dark, stone vaults had fallen into the hands of a close corporation of Koyals, as they were called. The word means 'weighers', and their function under the native Government had been to weigh all grains brought to market. No sales could take place unless the grain was weighed by these men, who levied a small fee for the service and paid a few to the native ruler for the appointment. They acquired power by degrees, as in India such middlemen always do, and presumed to regulate the market rates and prices and in many ways interfere with business, tyrauize our traders, demand heavy payments on various pretexts and in many ways oppress and defraud the people. When I proposed to rebuild their market they objected and produced an ancient document granting them the propriotory right in the building. It was impossible to say whether this document was genuine or not (probably not) but when I consulted the law officers, I was advised that there was no legal means of contending it, as through the carelessness of former Collectors the Koyals had been allowed to remain in possession long enough to establish a prescriptive right to the buildings, as well as to the exclusive exercise of their functions. This market was built against the outer side of the great wall surrounding the park in which Lal Bagh - the Commissioner's residence – stood. Attached to this ancient wall, and dating from the sixteenth century or earlier, there were several other half ruined ancient buildings empty and disused strange, tall,

gloomy structures of dark red stone. I at first thought of making use of those for an opposition market, but they were found to be too ruinous to be put into repair and inconveniently shaped and situated. So I had to search elsewhere and at length, at the eastern end of the town - the old market was at the western end- I found a large, neglected patch of ground grown over with jungle which was said to have been the site of the Maratha Government's Law Courts. It was the property of the Government, so I could do what I liked with it. On cleaning the jungle and digging up the soil the workmen came upon six or seven beautifully carved capitals of pillars and by degrees unearthed the drums of pillars themselves, together with numerous finely carved fragments of sandstone and great quantities of laterite blocks which had evidently been used for building. With these materials I set to work and designed a handsome market which was built on this site. It was of laterite, a lofty hall with chambers for warehousing grain, and in front a long, wide portico supported by pillars above mentioned which were duly priced together. A little on one side we found a deep ancient tank lined with laterite and adorned with carvings of gods, goddesses, men and animals All this was restored, cleaned out the tank, rebuilt the ghats or steps and made a very handsome place of it. I put an inscription over the front of the market house and opened it as a public market free from all interference of the Koyals. In India one never remains long enough in any place to see the fruits of one's work. I donot know whether the new market was successful or not. It began well and was doing well as long as I remained in Cuttack.

**Extract From : MEMOIRS OF A BENGAL CIVILIAN**
**( Autobiography of John Beames )**

❑ ❑ ❑

# ସେ କାଳର ସମ୍ବାଦପତ୍ରରେ ଜନ୍ ବୀମ୍ସ

## ବାଲେଶ୍ୱର ସମ୍ବାଦ ବାହିକା

ପାକ୍ଷିକ ସମ୍ବାଦ ପତ୍ରିକା

( ୩ୟ ଭାଗ, ୧-୭-୧୮୭୨, ସଂଖ୍ୟା୧ )

### ସର୍ବସାଧାରଣଙ୍କ ଗୋଚରାର୍ଥେ ବିଜ୍ଞାପନ

ବଙ୍ଗଦେଶର ମାନ୍ୟବର ଶ୍ରୀଯୁକ୍ତ ଲେ଼ଫଟନେଣ୍ଟ୍ ଗବର୍ଣ୍ଣର ସାହେବଙ୍କ ଅନୁମୋଦନ କ୍ରମେ ବାଲେଶ୍ୱର ସମ୍ବାଦ ବାହିକା ନାମ୍ନୀ ପତ୍ରିକା ଅଦ୍ୟାବଧି ଆଂଶିକ ସରକାରୀ ଓ ଆଂଶିକ ସାଧାରଣ ସମ୍ବାଦ ବାହିକା ବୋଲି ସ୍ଥାପିତ ହେଲା । ଅତଏବ ସର୍ବସାଧାରଣଙ୍କୁ ଜଣାଉଅଛୁଁ ଯେ ଭବିଷ୍ୟତ କ୍ରମେ ଉକ୍ତ ପତ୍ରିକାର ସରକାରୀ ଅଂଶରେ ଯାହା ପ୍ରକାଶ ହେବ ସେ ସମସ୍ତଙ୍କୁ ସରକାରୀ ଅଭିପ୍ରାୟ ଓ ଆଜ୍ଞା ଜାଣି ପ୍ରତିପାଳନ କରିବେ ।

ଯେଉଁ ବିଧାନମାନ ପ୍ରଚଳିତ ଅଛି ସରକାର ଯେବେ ସେଥିମଧ୍ୟରୁ କୌଣସି ବିଧାନକୁ ରହିତ କରିବେ ତେବେ ତହିଁର ହୃଦ୍‌ବୋଧଜନକ କାରଣମାନ ଉକ୍ତ ସରକାରୀ ଅଂଶରେ ଲେଖାଯିବ । ଯେବେ ସେହି ବିଧାନ ପରିବର୍ତ୍ତରେ ଅନ୍ୟ କୌଣସି ବିଧାନ ପ୍ରଚାରିତ ହେବ ସେହି ନବ ପ୍ରଚାରିତ ବିଧାନର ଉପଯୋଗିତା ଲେଖାଯିବ ଆଉ କୌଣସି ନୂତନ ବିଧାନ ବାହାରିଲେ ତହିଁର ପ୍ରୟୋଜନ ମଧ୍ୟ ପ୍ରକାଶ ହେବ ।

ସରକାର ଯେବେ କୌଣସି ନୂଆ ଆଇନ ପ୍ରଚାର କରନ୍ତି ଫଳରେ ଯାହାହେଉ, ପ୍ରଜାମାନଙ୍କର ହିତ ସାଧନ ଓ ଅନିଷ୍ଟ ନିବାରଣ ବ୍ୟତୀତ ସରକାରଙ୍କର ଅନ୍ୟ ଉଦ୍ଦେଶ୍ୟ ନଥାଏ । ଯେଉଁ ବିଧାନ ପ୍ରକାଶ ହୁଏ ସେ ସମସ୍ତ ଦ୍ୱାରା ଯେ ପ୍ରଜାବର୍ଗର ଭଲ ବ୍ୟତୀତ ମନ୍ଦ ହୁଏ ନାହିଁ ଏହା ଆମ୍ଭେମାନେ ଅସ୍ୱୀକାର କରୁନାହୁଁ । ସରକାର ସର୍ବବିଜ୍ଞ ନୁହନ୍ତି । ତାଙ୍କର କଳ୍ପନା ଓ ଅନୁମାନ ମନୁଷ୍ୟର କଳ୍ପନା ଓ ଅନୁମାନ ଛଡ଼ା ଅନ୍ୟ କିଛି ନୁହେଁ । ଏଥକୁ ପ୍ରଜାମାନେ ତୁନି ହୋଇ ରହିଲେ ସରକାରଙ୍କର ଚାରା ନାହିଁ । ଅପିଚ ଏହା ମଧ୍ୟ ବକ୍ତବ୍ୟ ଯେ ଆଇନମାନଙ୍କୁ ସମ୍ପୂର୍ଣ୍ଣମତେ ପରୀକ୍ଷାକରି ତତ୍‌ସମସ୍ତଙ୍କର ଉଦ୍ଦେଶ୍ୟ ବୁଝିବାର ସର୍ବସାଧାରଣଙ୍କ ମଧ୍ୟରେ ସହଜ ନୁହେଁ । ସରକାରଙ୍କ ଆଇନ ସମ୍ବନ୍ଧରେ ପ୍ରଜାମାନଙ୍କ ମନରେ ବହୁତ କୁସଂସ୍କାର ଥିବାର ଜଣାଯାଏ । ସରକାରଙ୍କ ଅଭିପ୍ରାୟ ନ ଜାଣିବା

ହେତୁରୁ ଏହି କୁସଂସ୍କାର ଜାତ ହୋଇଅଛି । ଏଣିକି ଏହି ଅଭିପ୍ରାୟ ଦ୍ୱାରା କ୍ରମରେ ଉକ୍ତ କୁସଂସ୍କାରମାନ ରହିତ ହେବାର ସମ୍ଭାବନା । ସରକାର କେମନ୍ତ ପ୍ରଜାବତ୍ସଳ ପ୍ରଚାରିତ ବିଧାନମାନଙ୍କର ଯଥାର୍ଥ କାରଣ ପ୍ରକାଶ ହେଲେ ପ୍ରଜାମାନେ ତାହା ଅନାୟାସରେ ବୁଝିପାରିବେ । ବାସ୍ତବରେ ଏହି ପତ୍ରିକା ହାକିମ ଓ ପ୍ରଜାମାନଙ୍କର ପରସ୍ପର ବାର୍ତ୍ତାବହ ହେବ ।

ଆମ୍ଭେ ବହୁଦିନ ଏ ପ୍ରଦେଶରେ ଅବସ୍ଥାନ କରି ବୁଝିଅଛୁଁ ? ହାକିମମାନେ କୌଣସି ସାଧାରଣ ହିତକର କର୍ମ ଆରମ୍ଭ କଲା ମାତ୍ରକେ ସେଥିରେ ବିରୁଦ୍ଧରେ ନାନା ପ୍ରକାର ମିଥ୍ୟା ସମ୍ବାଦମାନ ପ୍ରକାଶ ହୋଇ ଯେଉଁମାନେ କି ଦେଶର ଅବସ୍ଥା ଭଲରୂପେ ଜାଣନ୍ତି ନାହିଁ ସେମାନଙ୍କର ମନକୁ ସନ୍ଦେହଯୁକ୍ତ କରାଏ ; ଭଲ କରିବାକୁ ଯାଇ ଶେଷକୁ ହାକିମମାନେ ଅକାରଣ ନିନ୍ଦାର ଭୋଗୀ ହୁଅନ୍ତି । ଏହା ଅତି ଦୁଃଖର ବିଷୟ ଅଟେ ।

ପ୍ରଜାମାନଙ୍କ ମଧ୍ୟରେ ଅନେକ ଲୋକ ମୂର୍ଖ ଓ ଆପଣା ଗର୍ବୀ ଥିବାରୁ ଏହି ଅନିଷ୍ଟ ହେଉଅଛି । ମୂର୍ଖ ଲୋକମାନେ କୌଣସି ଭଲକାର୍ଯ୍ୟର ମର୍ମ ବୁଝି ପାରନ୍ତି ନାହିଁ ପୁଣି ଆପଣା ଗର୍ବୀ ଲୋକମାନେ ଆପଣା ହିତସାଧନ ନିମନ୍ତେ ସବୁବେଳେ ବ୍ୟସ୍ତ ଥାଆନ୍ତି । ସାଧାରଣଙ୍କର ମଙ୍ଗଳ ଚିନ୍ତିବା ପାଇଁ ସେମାନଙ୍କର ଅବକାଶ ନଥାଏ । ସୁତରାଂ ହାକିମମାନଙ୍କର କାର୍ଯ୍ୟ ଦ୍ୱାରା ଆପଣା ଗରଜର ଟିକିଏମାତ୍ର ବ୍ୟାଘାତ ଦେଖିଲାକ୍ଷଣି ଅସ୍ଥିର ହୁଅନ୍ତି । ରାଜଶାସନକୁ ଅକାରଣ ଉପଦ୍ରବ ରଟାଇ ଦେଇ ସମ୍ବାଦ ପତ୍ରିକାମାନଙ୍କରେ ଦୁଃଖ ପ୍ରକାଶ କରନ୍ତି । ଏହି ଅନିଷ୍ଟଖଣ୍ଡନ ସକାଶେ ଅତ୍ରସ୍ଥ ସାଧାରଣଙ୍କର ମଙ୍ଗଳୋଦ୍ଦେଶ୍ୟରେ ଆମ୍ଭେମାନେ ସମଏ ସମଏ ଆଇନ ଅନୁବାଦ କରାଇ ବାଲେଶ୍ୱର ସମ୍ବାଦ ବାହିକାରେ ପ୍ରକାଶ କରିବାର ଭାର ଗ୍ରହଣ କଲୁଁ ।

ଆମ୍ଭେମାନେ ଏ ଦେଶକୁ ଆସିଲା ଦିନୁଁ ଯଦ୍ୟପି ସାନବଡ଼ ସମସ୍ତ ଲୋକଙ୍କ ସହିତ ସାକ୍ଷାତ କରି ଅନେକ କୁଡ଼ାଏ ଗୁରୁତର ବିଷୟମାନ ଜାଣି ଅଛୁଁ ଓ ପ୍ରକାଶ କରିଅଛୁଁ ତଥାଚ ଆହୁରି ଅନେକ ବିଷୟ ଅପ୍ରକାଶ ଥିବାର ଜଣାଯାଏ । ଉତ୍କଳ ଭାଷାରେ ଆମ୍ଭର ବ୍ୟୁତ୍ପତ୍ତି ଥିଲେ ମଧ୍ୟ ଆମ୍ଭ ପକ୍ଷରେ ତହିଁର ବ୍ୟବହାରିକ ଦକ୍ଷତା ଲଭିବାର କଠିନ ଅଟେ । ହେତୁକି ଆମ୍ଭମାନଙ୍କର ଉଚ୍ଚାରଣ ଅସ୍ପଷ୍ଟତା ତହିଁର ପ୍ରଧାନ ପ୍ରତିବନ୍ଧକ ହୋଇଅଛି । ଇଉରୋପୀୟ ଲୋକେ ଏ ଦେଶରେ ଭାଷାରେ ସହସ୍ର ବ୍ୟୁତ୍ପନ୍ନ ହେଉନ୍ତୁ ପଛକେ ଦେଶୀୟ ଲୋକେ ସେମାନଙ୍କର ଉଚ୍ଚାରଣ ଅସ୍ପଷ୍ଟତା ହେତୁରୁ ତାଙ୍କର ଭାଷା ସହଜରେ ବୁଝି ପାରନ୍ତି ନାହିଁ । ପୁଣି ଆଇନର ମର୍ମ ବାକ୍ୟରେ ବୁଝାଇବାର ସୁବିଧା ଏ

# ସେ କାଳର ସମ୍ବାଦପତ୍ରରେ ଜନ୍ ବୀମ୍ସ

## ବାଲେଶ୍ୱର ସମ୍ବାଦ ବାହିକା

ପାକ୍ଷିକ ସମ୍ବାଦ ପତ୍ରିକା

( ୩ୟ ଭାଗ, ୧-୭-୧୮୭୨, ସଂଖ୍ୟା ୧ )

### ସର୍ବସାଧାରଣଙ୍କ ଗୋଚରାର୍ଥେ ବିଜ୍ଞାପନ

ବଙ୍ଗଦେଶର ମାନ୍ୟବର ଶ୍ରୀଯୁକ୍ତ ଲେଫଟନେଣ୍ଟ୍ ଗବର୍ଣ୍ଣର ସାହେବଙ୍କ ଅନୁମୋଦନ କ୍ରମେ ବାଲେଶ୍ୱର ସମ୍ବାଦ ବାହିକା ନାମ୍ନୀ ପତ୍ରିକା ଅଦ୍ୟାବଧି ଆଂଶିକ ସରକାରୀ ଓ ଆଂଶିକ ସାଧାରଣ ସମ୍ବାଦ ବାହିକା ବୋଲି ସ୍ଥାପିତ ହେଲା । ଅତଏବ ସର୍ବସାଧାରଣଙ୍କୁ ଜଣାଉଅଛୁଁ ଯେ ଭବିଷ୍ୟତ କ୍ରମେ ଉକ୍ତ ପତ୍ରିକାର ସରକାରୀ ଅଂଶରେ ଯାହା ପ୍ରକାଶ ହେବ ସେ ସମସ୍ତଙ୍କୁ ସରକାରୀ ଅଭିପ୍ରାୟ ଓ ଆଜ୍ଞା ଜାଣି ପ୍ରତିପାଳନ କରିବେ ।

ଯେଉଁ ବିଧାନମାନ ପ୍ରଚଳିତ ଅଛି ସରକାର ଯେବେ ସେଥିମଧ୍ୟରୁ କୌଣସି ବିଧାନକୁ ରହିତ କରିବେ ତେବେ ତହିଁର ହୃଦ୍‌ବୋଧଜନକ କାରଣମାନ ଉକ୍ତ ସରକାରୀ ଅଂଶରେ ଲେଖାଯିବ । ଯେବେ ସେହି ବିଧାନ ପରିବର୍ତ୍ତରେ ଅନ୍ୟ କୌଣସି ବିଧାନ ପ୍ରଚାରିତ ହେବ ସେହି ନବ ପ୍ରଚାରିତ ବିଧାନର ଉପଯୋଗିତା ଲେଖାଯିବ ଆଉ କୌଣସି ନୂତନ ବିଧାନ ବାହାରିଲେ ତହିଁର ପ୍ରୟୋଜନ ମଧ୍ୟ ପ୍ରକାଶ ହେବ ।

ସରକାର ଯେବେ କୌଣସି ନୂଆ ଆଇନ ପ୍ରଚାର କରନ୍ତି ଫଳରେ ଯାହାହେଉ, ପ୍ରଜାମାନଙ୍କର ହିତ ସାଧନ ଓ ଅନିଷ୍ଟ ନିବାରଣ ବ୍ୟତୀତ ସରକାରଙ୍କର ଅନ୍ୟ ଉଦ୍ଦେଶ୍ୟ ନଥାଏ । ଯେଉଁ ବିଧାନ ପ୍ରକାଶ ହୁଏ ସେ ସମସ୍ତ ଦ୍ୱାରା ଯେ ପ୍ରଜାବର୍ଗର ଭଲ ବ୍ୟତୀତ ମନ୍ଦ ହୁଏ ନାହିଁ ଏହା ଆମ୍ଭେମାନେ ଅସ୍ୱୀକାର କରୁନାହୁଁ । ସରକାର ସର୍ବବିଜ୍ଞ ନୁହନ୍ତି । ତାଙ୍କର କଳ୍ପନା ଓ ଅନୁମାନ ମନୁଷ୍ୟର କଳ୍ପନା ଓ ଅନୁମାନ ଛଡ଼ା ଅନ୍ୟ କିଛି ନୁହେଁ । ଏଥକୁ ପ୍ରଜାମାନେ ତୁନି ହୋଇ ରହିଲେ ସରକାରଙ୍କର ଚାରା ନାହିଁ । ଅପିଚ ଏହା ମଧ୍ୟ ବକ୍ତବ୍ୟ ଯେ ଆଇନମାନଙ୍କୁ ସମ୍ପୂର୍ଣ୍ଣମତେ ପରୀକ୍ଷାକରି ତତ୍‌ସମସ୍ତଙ୍କର ଉଦ୍ଦେଶ୍ୟ ବୁଝିବାର ସର୍ବସାଧାରଣଙ୍କ ମଧ୍ୟରେ ସହଜ ନୁହେଁ । ସରକାରଙ୍କ ଆଇନ ସମ୍ବନ୍ଧରେ ପ୍ରଜାମାନଙ୍କ ମନରେ ବହୁତ କୁସଂସ୍କାର ଥିବାର ଜଣାଯାଏ । ସରକାରଙ୍କ ଅଭିପ୍ରାୟ ନ ଜାଣିବା

ହେତୁରୁ ଏହି କୁସଂସ୍କାର ଜାତ ହୋଇଅଛି । ଏଣିକି ଏହି ଅଭିପ୍ରାୟ ଦ୍ୱାରା କ୍ରମରେ ଉକ୍ତ କୁସଂସ୍କାରମାନ ରହିତ ହେବାର ସମ୍ଭାବନା । ସରକାର କେମନ୍ତ ପ୍ରଜାବତ୍ସଳ ପ୍ରଚାରିତ ବିଧାନମାନଙ୍କର ଯଥାର୍ଥ କାରଣ ପ୍ରକାଶ ହେଲେ ପ୍ରଜାମାନେ ତାହା ଅନାୟାସରେ ବୁଝିପାରିବେ । ବାସ୍ତବରେ ଏହି ପତ୍ରିକା ହାକିମ ଓ ପ୍ରଜାମାନଙ୍କର ପରସ୍ପର ବାର୍ତ୍ତାବହ ହେବ ।

ଆମ୍ଭେ ବହୁଦିନ ଏ ପ୍ରଦେଶରେ ଅବସ୍ଥାନ କରି ବୁଝିଅଛୁଁ ? ହାକିମମାନେ କୌଣସି ସାଧାରଣ ହିତକର କର୍ମ ଆରମ୍ଭ କଲା ମାତ୍ରକେ ସେଥିରେ ବିରୁଦ୍ଧରେ ନାନା ପ୍ରକାର ମିଥ୍ୟା ସମ୍ବାଦମାନ ପ୍ରକାଶ ହୋଇ ଯେଉଁମାନେ କି ଦେଶର ଅବସ୍ଥା ଭଲରୂପେ ଜାଣନ୍ତି ନାହିଁ ସେମାନଙ୍କର ମନକୁ ସନ୍ଦେହଯୁକ୍ତ କରାଏ ; ଭଲ କରିବାକୁ ଯାଇ ଶେଷକୁ ହାକିମମାନେ ଅକାରଣ ନିନ୍ଦାର ଭୋଗୀ ହୁଅନ୍ତି । ଏହା ଅତି ଦୁଃଖର ବିଷୟ ଅଟେ ।

ପ୍ରଜାମାନଙ୍କ ମଧ୍ୟରେ ଅନେକ ଲୋକ ମୂର୍ଖ ଓ ଆପଣା ଗର୍ବୀ ଥିବାରୁ ଏହି ଅନିଷ୍ଟ ହେଉଅଛି । ମୂର୍ଖ ଲୋକମାନେ କୌଣସି ଭଲକାର୍ଯ୍ୟର ମର୍ମ ବୁଝି ପାରନ୍ତି ନାହିଁ ପୁଣି ଆପଣା ଗର୍ବୀ ଲୋକମାନେ ଆପଣା ହିତସାଧନ ନିମନ୍ତେ ସବୁବେଳେ ବ୍ୟସ୍ତ ଥାଆନ୍ତି । ସାଧାରଣଙ୍କର ମଙ୍ଗଳ ଚିନ୍ତିବା ପାଇଁ ସେମାନଙ୍କର ଅବକାଶ ନଥାଏ । ସୁତରାଂ ହାକିମମାନଙ୍କର କାର୍ଯ୍ୟ ଦ୍ୱାରା ଆପଣା ଗରଜର ଟିକିଏମାତ୍ର ବ୍ୟାଘାତ ଦେଖିଲାକ୍ଷଣି ଅସ୍ଥିର ହୁଅନ୍ତି । ରାଜଶାସନକୁ ଅକାରଣ ଉପଦ୍ରବ ରଟାଇ ଦେଇ ସମ୍ବାଦ ପତ୍ରିକାମାନଙ୍କରେ ଦୁଃଖ ପ୍ରକାଶ କରନ୍ତି । ଏହି ଅନିଷ୍ଟଖଣ୍ଡନ ସକାଶେ ଅତ୍ରସ୍ଥ ସାଧାରଣଙ୍କର ମଙ୍ଗଳୋଦ୍ଦେଶ୍ୟରେ ଆମ୍ଭେମାନେ ସମଏ ସମଏ ଆଇନ ଅନୁବାଦ କରାଇ ବାଲେଶ୍ୱର ସମ୍ବାଦ ବାହିକାରେ ପ୍ରକାଶ କରିବାର ଭାର ଗ୍ରହଣ କଲୁଁ ।

ଆମ୍ଭେମାନେ ଏ ଦେଶକୁ ଆସିଲା ଦିନୁଁ ଯଦ୍ୟପି ସାନବଡ଼ ସମସ୍ତ ଲୋକଙ୍କ ସହିତ ସାକ୍ଷାତ କରି ଅନେକ କୁଡ଼ାଏ ଗୁରୁତର ବିଷୟମାନ ଜାଣି ଅଛୁଁ ଓ ପ୍ରକାଶ କରିଅଛୁଁ ତଥାଚ ଆହୁରି ଅନେକ ବିଷୟ ଅପ୍ରକାଶ ଥିବାର ଜଣାଯାଏ । ଉତ୍କଳ ଭାଷାରେ ଆମ୍ଭର ବ୍ୟୁତ୍ପତ୍ତି ଥିଲେ ମଧ୍ୟ ଆମ୍ଭ ପକ୍ଷରେ ତହିଁର ବ୍ୟବହାରିକ ଦକ୍ଷତା ଲଭିବାର କଠିନ ଅଟେ । ହେତୁକି ଆମ୍ଭମାନଙ୍କର ଉଚ୍ଚାରଣ ଅସ୍ପଷ୍ଟତା ତହିଁର ପ୍ରଧାନ ପ୍ରତିବନ୍ଧକ ହୋଇଅଛି । ଇଉରୋପୀୟ ଲୋକେ ଏ ଦେଶରେ ଭାଷାରେ ସହସ୍ର ବ୍ୟୁତ୍ପନ୍ନ ହେଉନ୍ତୁ ପଛକେ ଦେଶୀୟ ଲୋକେ ସେମାନଙ୍କର ଉଚ୍ଚାରଣ ଅସ୍ପଷ୍ଟତା ହେତୁରୁ ତାଙ୍କର ଭାଷା ସହଜରେ ବୁଝି ପାରନ୍ତି ନାହିଁ । ପୁଣି ଆଇନର ମର୍ମ ବାକ୍ୟରେ ବୁଝାଇବାର ସୁବିଧା ଏ

ଦେଶରେ ନାହିଁ, ଆମ୍ଭର ପଦର ଅଙ୍ଗ ମଧ ନୁହେଁ । ସୁତରାଂ ଯାହା ମନ୍ତବ୍ୟ ତତ୍‌ସମସ୍ତ ଉତ୍କଳଭାଷାରେ ଉକ୍ତ ପତ୍ରିକାରେ ନିୟମିତ-ରୂପରେ ପ୍ରକାଶ କରିବୁଁ ।

ଯେବେ କେହି ଆଇନ ଅର୍ଥାତ୍ ବ୍ୟବସ୍ଥା ପ୍ରଚାର ପକ୍ଷରେ କୌଣସି ସନ୍ଦେହ ରଖୁଥିବେ ତେବେ ତାହା ଉକ୍ତ ପତ୍ରିକାରେ ଅଥବା ଅନ୍ୟ ପତ୍ରିକାରେ ପ୍ରକାଶକଲେ ସେଥିର ଉତ୍ତର ଏହି ପତ୍ରିକାରେ ଦେବୁଁ ।

ବାଲେଶ୍ୱର — ଜନ୍ ବୀମ୍‌ସ

୨୪ ଜୁନ୍ ୧୮୭୨ — କଲେକ୍ଟର ଜିଲେ ବାଲେଶ୍ୱର

## ଉତ୍କଳ ଦୀପିକା

( ୮ ମ ଭାଗ, ୧/୧୧/୧୮୭୩, ସଂଖ୍ୟା ୪୩ )

### ବଙ୍ଗାଳୀ ଓ ଓଡ଼ିୟାଙ୍କର ମନାନ୍ତର ।

ଗତ ପ୍ରକାଶିତ 'ଉତ୍କଳ ପୁତ୍ର' ଆମମାନଙ୍କ ଏକଟିଂ କମିଶନର ଶ୍ରୀଯୁକ୍ତ ବିମସ୍ ସାହେବଙ୍କୁ ପ୍ରଶଂସା କରି କହିଅଛନ୍ତି ଯେ ସେ କାହାରି କଥାରେ ନ ଭୁଲି ଆପେ ସ୍ୱାଧୀନ ରୂପେ ବିଚାର କରି କର୍ମ କରନ୍ତି । ଏଥିରେ ଆମ୍ଭେମାନେ ଐକ୍ୟ ଅଛୁଁ କିନ୍ତୁ ଅଧିକାଂଶ ବଙ୍ଗାଳୀମାନେ 'ସବୁଠାରେ ଓଡ଼ିୟାଙ୍କର ନିନ୍ଦା କରନ୍ତି ଏବଂ ଓଡ଼ିୟାମାନେ ସୁତରାଂ ସେମାନଙ୍କୁ ଅଶ୍ରଦ୍ଧା କରନ୍ତି' ଏକଥା ଅତି ଶୋଚନୀୟ ଅଟଇ ।

X X X

## ଉତ୍କଳ ପୁତ୍ର

( ୧ମ ଭାଗ , ୩-୧୨-୧୮୭୩, ସଂଖ୍ୟା ୧୬ )

ଗତ ପକ୍ଷରେ ଚାଉଳର ମୂଲ୍ୟ କଟକରେ ବୃଦ୍ଧି ହେବାର ଲେଖିଥିଲୁ । ଶ୍ରୀ ଯୁକ୍ତ ବିମସ୍ ସାହେବଙ୍କ୍ ଯୋଗୁଁ ଏଥର ତାହା କିଛି ଉଣା ପଡ଼ିଅଛି । ସାହେବ ମହୋଦୟ କନଷ୍ଟେବଲ ଓ ମୋହରରଙ୍କ ଦ୍ୱାରା କଟକକୁ ଆଣୁଥିବା ଚାଉଳବାଲାଙ୍କୁ ମାରୱାଡ଼ି କି ବିଦେଶୀ ମହାଜନକୁ ଦେବାକୁ ବାରଣ କଲାରୁଁ ଚାଉଳ ଏଠାକୁ ଆସୁଅଛି ଓ ଦଣ୍ଡଦାରମାନେ ସ୍ୱୀୟ ଦୂରଭିସନ୍ଧି ଆଉ କୌଣସିମତେ ସିଦ୍ଧ କରିପାରୁ ନାହାନ୍ତି ।

## ଉତ୍କଳ ହିତୈଷିଣୀ

( ୪ର୍ଥ ଭାଗ, ୨୪-୧-୧୮୭୪, ସଂଖ୍ୟା ୨ )

ଆମ୍ଭେମାନେ ଅବଗତ ହେଲୁଁ ଯେ ଡେମପଡ଼ା ପ୍ରଜାବିଦ୍ରୋହିତ ପୂର୍ବପରି

ରହିଅଛି । ପ୍ରଜାମାନେ ରାଜାଙ୍କୁ କର ଦେଉନାହାନ୍ତି । ଏ ଗୋଳଯୋଗର କାରଣ କ'ଣ ? ଶ୍ରୀଯୁକ୍ତ ବିମସ୍ ସାହେବଙ୍କ ପରି ବିଚକ୍ଷଣ ଲୋକ ଯେବେ ଏ ସାମାନ୍ୟ କଥାର ନିଷ୍ପତ୍ତି କରି ନ ପାରିଲେ ତେବେ ଯେ ଆଉ କିଏ ଏକଥା ସଜାଡ଼ କରିବ ଆମ୍ଭେମାନେ କହି ନ ପାରୁଁ । ଡୋମପଡ଼ାଟି କିରୂପ ମହାଲ ? ସେ କି ମୋଗଲ ବନ୍ଦି, କନିକା କି କୁଜଙ୍ଗ ପରି ?

ଇଙ୍ଗରେଜଙ୍କ ଅମଲଦାରିରେ ମୋଗଲବନ୍ଦର ରାଜା ଓ ଜମିଦାରମାନେ ଲେପକୁ ପ୍ରାପ୍ତହେଲେ ଏହାର କାରଣ କି ? ଅବଶେଷରେ କୁଜଙ୍ଗପରି ରାଜ୍ୟ କି ଯାହାର ବାର୍ଷିକ ଆୟ ଲକ୍ଷାଧିକ ଟଙ୍କା । ସେ ପାଞ୍ଚଲକ୍ଷ ଟଙ୍କାକୁ ନିଲାମ ହେଲା । ଏଟି କାହା ଦୋଷରୁ ? କୁଜଙ୍ଗରାଜା ଏବେ ମୋକଦ୍ଦମାରେ ଜଡ଼ିତ ଅଛନ୍ତି । ଗୋଟିଏ ମୋକଦ୍ଦମା ଯାହା ହେଲା ତାହା ପାଠକମାନଙ୍କ ଅବିଦିତ ନାହିଁ । ଏବେ ଆଉ ଗୋଟିଏ ମାମଲା ଦାୟେର ଅଛି । ଦେଖାଯାଉ ଦେବତାମାନଙ୍କର କେବଳ ଜଳ ବାୟୁରେ ନୀତି ନିଷ୍ପତ୍ତି ହେବାକୁ ହୁଏ ନାହିଁ ।

## ଉତ୍କଳ ଦୀପିକା

( ୯ମ ଭାଗ, ୧୮-୦୪-୧୮୭୪, ସଂଖ୍ୟା ୧୬ )

### ବୈରାଗୀଙ୍କ ଆଶ୍ରମ ଭ୍ରଷ୍ଟ

ବର୍ତ୍ତମାନ ତେଲେଙ୍ଗାବଜାର ଫାଣ୍ଡି ଏକ ଅପ୍ରକାଶ୍ୟ ଏବଂ ଜଙ୍ଗଲବେଷ୍ଟିତ ସ୍ଥଳରେ ଥିବାରୁ ଶ୍ରୀଯୁକ୍ତ ବିମ୍ସ୍ ସାହେବ ମାଜିଷ୍ଟ୍ରେଟ୍ ସେଠାର ଫାଣ୍ଡି ଉଠାଇ ଆଣି କାଠଯୋଡ଼ି ନଦୀ ରାଜଘାଟ ଉପରେ ଯେଉଁଠାରେ ବୈରାଗୀଙ୍କ ଆଶ୍ରମ ଅଛି ସେଠାରେ ବସାଇବାକୁ ମନସ୍ଥ କରିଥିଲେ କିନ୍ତୁ ବଢ଼ି ସମୟରେ ସେଠାକୁ ଜଳ ଆସଇ ବୋଲି ତାହା ପରିତ୍ୟାଗ କରି ତହିଁ ନିକଟ ଅନ୍ୟ ସ୍ଥାନରେ ଫାଣ୍ଡି ବସାଇବାକୁ ସ୍ଥିର କରିଅଛନ୍ତି । ବୈରାଗୀଙ୍କ ଆଶ୍ରମ ଫାଣ୍ଡିର ଉପଯୁକ୍ତ ହେଲା ନାହିଁ ସତ୍ୟ କିନ୍ତୁ ତାହା ବୋଲି ବୈରାଗୀମାନେ ସେଠାରେ ରହିପାରିଲେ ନାହିଁ । ସାହେବ ପ୍ରଶଂସିତ ସେସମସ୍ତଙ୍କୁ ସ୍ଥାନାନ୍ତରକୁ ତଡ଼ିଦେଇ ଅଛନ୍ତି । ଏଇପ କରିବାର ହେତୁ ଏହି ଯେ ଜଣେ ବୈରାଗୀ ଉକ୍ତ ଆଶ୍ରମରେ କେତେ ମାସ ହେବ ଆସି ରହି ନିତ୍ୟ ପଞ୍ଚାଗ୍ନିତପ କରୁଥିଲା ଅର୍ଥାତ୍ ଚାରିଆଡ଼େ ଅନେକ ଗଦା ଘସିନିଆଁ ଜାଳି ତହିଁ ମଧ୍ୟରେ ଆପେ ବହୁତବେଳ ବସି ତପ କରୁଥିଲା । ନଈକୂଳିଆ ବତାସ ପାଖରେ ଅନେକ ଅଗ୍ନି ଜାଳିବାର କିଏ ଜାଣେ କେତେବେଳେ ଅଗ୍ନିଉଡ଼ି ନିକଟବର୍ତ୍ତି ଘର ସବୁରେ ପ୍ରବେଶ କରଇ । ଏଥିପାଇଁ ସାହେବ ତାହାକୁ ଅନିଷ୍ଟକର

ଜ୍ଞାନ କଲେ ଓ ମଧ ଖରାଦିନେ ଲୋକଙ୍କର ଗତାୟତ ବାଟରେ ଅଗ୍ନି ଜାଳିଲେ ସମସ୍ତଙ୍କୁ କ୍ଳେଶକର ହେଉଥିବ ସନ୍ଦେହ ନାହିଁ । ଯାହାହେଉ ସାହେବ ପ୍ରଶଂସିତ ବୈରାଗୀମାନଙ୍କୁ ତଡ଼ିଦେବାର ବୈଷ୍ଣବ ସମ୍ପ୍ରଦାୟର ଲୋକମାନେ ବଡ଼ ବିରକ୍ତ ହୋଇଅଛନ୍ତି ଓ ଏ କାର୍ଯ୍ୟକୁ ଘୋର ଅନ୍ୟାୟ ମଣୁଅଛନ୍ତି ମାତ୍ର ଆମ୍ଭମାନଙ୍କ ବିବେଚନାରେ ତାହା ନୁହଁଇ । ଆମ୍ଭେମାନେ ବୋଧ କରୁଁ ଏ କାର୍ଯ୍ୟଟି ଭଲ ହୋଇଅଛି ଓ ତାହାର ଚରମ ଫଳ ବୈଷ୍ଣବଙ୍କ ପ୍ରତି ଉପକାର ଜନକ ଅଟଇ । ଯେବେ ବିମସ୍ ସାହେବ ଘରଭଙ୍ଗାଇ ଓ ସେଠାରେ ବିରାଜମାନ ଥିବା ହନୁମାନ ପ୍ରଭୃତି ଠାକୁରଙ୍କୁ ଉଠାଇ ଦେଇଥାନ୍ତେ ତାହା ହେଲେ ଆମ୍ଭେମାନେ ସୁଦ୍ଧା ସେ କାର୍ଯ୍ୟକୁ ଯଥୋଚିତ ନିନ୍ଦା କରନ୍ତୁ ଏବଂ ତଦ୍ଦ୍ୱାରା କେବଳ ହିନ୍ଦୁଧର୍ମ ପ୍ରତି ଅତ୍ୟାଚାର ହୁଅନ୍ତା ଏମନ୍ତ ନୁହେଁ, ଅନେକ ଦରିଦ୍ର ପାନ୍ଥ କି ଯେଉଁମାନେ ଏହି ଆଶ୍ରମ ଓ ତହିଁ ଚତୁଷ୍ପାର୍ଶ୍ୱରେ ରାତ୍ରକୁ ପଡ଼ି ରହି ପ୍ରାତଃ କାଳରେ ବାଟ ଧରନ୍ତି ସେମାନେ ବଡ଼ ହରବରରେ ପଡ଼ନ୍ତେ । ସାହେବ ଘର ଇତ୍ୟାଦି ଉପରେ ହସ୍ତକ୍ଷେପ କରିନାହାନ୍ତି କେବଳ ସେଠାରେ ଯେଉଁ ବୈରାଗୀମାନେ ପଡ଼ି ରହିଥିଲେ ତାହାଙ୍କୁ ଦେଇଅଛନ୍ତି । ବୈରାଗୀଙ୍କର ପୁଣି ଘର କ'ଣ ? ଯେଉଁ ବ୍ୟକ୍ତି ଧର୍ମ ଲାଗି ସଂସାର ତ୍ୟାଗ କରି ଭିକ୍ଷା ଦ୍ୱାରା ଉଦର ପୂରଣ ଓ ତୀର୍ଥ ସ୍ଥାନମାନ ପର୍ଯ୍ୟଟନ କରିବାରେ ଆପଣାକୁ ନିଯୁକ୍ତ କଲା ସେ ପୁଣି କାହିଁକି ଜନପୂର୍ଣ୍ଣ ସ୍ଥାନରେ ଅନେକ ଦିନ ପଡ଼ି ରହିବ ।

ଯେଉଁମାନେ ବିମ୍ସ୍ ସାହେବଙ୍କ କାର୍ଯ୍ୟରେ ବିରକ୍ତ ହୋଇଅଛନ୍ତି, ତାହାଙ୍କୁ ଆମ୍ଭେମାନେ ଏହି ପରାମର୍ଶ ଦେଉଅଛୁଁ ଯେ ଉକ୍ତ ଆଶ୍ରମରେ ଜଣେ ପୂଜାହାରି ନିଯୁକ୍ତ କରି ଦରିଦ୍ର ପଥିକଙ୍କୁ ନିତ୍ୟ ସନ୍ଧ୍ୟା ସମୟରେ ଶାକ-ଅନ୍ନ ଦାନର ଉପାୟ କରିଦେଲେ ଧର୍ମ ପ୍ରବୃତ୍ତି ଚରିତାର୍ଥ ହେବ ଅଥଚ ତାହାଙ୍କ ଦ୍ୱାରା କୌଣସି ଯୋଗୀର ଯୋଗ ଭଙ୍ଗ ହେବ ନାହିଁ ।

## ଉତ୍କଳ ଦୀପିକା

( ୯ମ ଭାଗ, ୧୩-୦୬-୧୮୭୪, ସଂଖ୍ୟା ୨୪ )

ଏ ନଗରରେ ସଚରାଚର ଭଡ଼ା ଗାଡ଼ିର କୋଚ୍‌ମ୍ୟାନମାନେ ଗାଡ଼ିରେ ଆଲୁଅ ନ ଜାଳି ରାତ୍ରରେ ଗାଡ଼ି ଚଳାଇବାର ଦେଖାଯାଏ । ଯଦ୍ୟପି କି ଏ ସହରରେ ଗାଡ଼ି ବିସ୍ତର ନଥିବାରୁ ତଦ୍ଦ୍ୱାରା କୌଣସି ଲୋକପ୍ରତି ଦୁର୍ଘଟଣା ଘଟିବାର ପ୍ରତ୍ୟକ୍ଷ ହୋଇନାହିଁ ମାତ୍ର ଅନ୍ଧାରରେ ଗାଡ଼ି ଚାଲିବା ସମୟରେ ଚାଲିଯିବା ବ୍ୟକ୍ତିଙ୍କର ଯେ ଅନେକ କ୍ଳେଶ ହୁଅଇ ତାହା ସର୍ବଦା ଦେଖାଯାଏ । ଏକେତ ସହରରେ ଆଲୁଅ ନାହିଁ, ଅନ୍ଧାରରେ ଗାଡ଼ି

ଶବ୍ଦପାଇଲେ ତାହା କେଉଁ ଦିଗରୁ ଆସୁଅଛି ସହସା ପଥିକମାନେ ଠିକଣା କରିପାରନ୍ତି ନାହିଁ ସୁତରାଂ ପଥଭାଙ୍ଗି ଚାଲିଯିବାରକୁ ଅଥବା ପଥପାର୍ଶ୍ୱରେ ଛିଡ଼ାହୋଇ ରହିବାକୁ ହୁଅଇ । ପୁଲିସ ଆଇନାନୁସାରେ ଏପରି ଗାଡ଼ିବାହକମାନେ ଗିରପ୍ତାର ହେବା ଯୋଗ୍ୟ ଅଟନ୍ତି ମାତ୍ର ପୂର୍ବରୁ ମୋକଦ୍ଦମା ହୋଇନାହିଁ ବୋଲି ପୁଲିସ୍ ଏ ଅପରାଧକୁ ଗ୍ରାହ୍ୟ କରନ୍ତି ନାହିଁ । ଶ୍ରୀଯୁକ୍ତ ବିମ୍‌ସ୍ ସାହେବଙ୍କ ପ୍ରତାପରୁ ପୁଲିସ୍ ବର୍ତ୍ତମାନ ଅନେକ ଏହିପରି ଅନ୍ୟାନ୍ୟ ପୁଲିସ୍ ଆଇନ ଲଙ୍ଘନକାରୀଙ୍କୁ ଗିରପ୍ତାର କରୁ ଅଛନ୍ତି । ପ୍ରସ୍ତାବିତ ବିଷୟରେ ମଧ୍ୟ ମାଜିଷ୍ଟ୍ରେଟ୍ ତାହାଙ୍କୁ ଆଦେଶ ଦେଲେ ଅନେକ ସାଧାରଣ ଉପକାର ହେବ ବୋଲି ଆମ୍ଭେମାନେ ଏ କଥାପ୍ରତି ତାହାଙ୍କର ଦୃଷ୍ଟି ଆକର୍ଷଣ କରୁଅଛୁଁ ।

## ଉତ୍କଳ ଦୀପିକା

( ୯ମ ଭାଗ, ୨୦-୦୬-୧୮୭୪, ସଂଖ୍ୟା ୨୫ )

ଶ୍ରୀଯୁକ୍ତ ବିମ୍‌ସ ସାହେବ ମାଜିଷ୍ଟ୍ରେଟ୍ ନଗର ସଂସ୍କାର ଓ ସୌଷ୍ଠବ ବର୍ଦ୍ଧନରେ ଏମନ୍ତ ତତ୍ପର ଯେ ଏହାଙ୍କପରି ଅଳ୍ପ ହାକିମ ସେରୂପ ଦେଖା ଯାଇଅଛି । ସେ ସ୍ୱୟଂ ନିତ୍ୟ ୨ ନଗରର ନାନା ଭାଗରେ ଭ୍ରମଣ କରି ଏଥିର ଅବସ୍ଥା ଏମନ୍ତ ସୁନ୍ଦରରୂପେ ଦେଖନ୍ତି ଯେ ଆମ୍ଭେମାନେ ସେରୂପ ଦେଖି କୌଣସି ଛିଦ୍ର ତାହାଙ୍କ ଗୋଚରରେ ଆଣିବାକୁ ନିତାନ୍ତ ସାହସପଣିଆ ମଣୁଅଛୁଁ । ତଥାଚ ଦାୟଗ୍ରସ୍ତ ହୋଇ କହିବାକୁ ହେଉଅଛି ଯେ ସଡ଼କ ପାଖ ନାଳ ସବୁର ସଂସ୍କାର କରିବାରେ ବହୁତ ବିଳମ୍ବ ହେଲା ଓ ତହିଁ ପାଇଁ ବଡ଼ ୨ ସଡ଼କ ଦୁଇପାଖରେ ବର୍ଷା ସମୟରେ ପାଣି ଜମା ହୋଇ ରହୁଅଛି । ଗତ କଥା କିଏ ପଚାରେ । ସେସବୁ ବାଟରେ ତ ଆଜିକାଲି ଗତାୟତ କରିବା ଏକ ପ୍ରକାର ବ୍ୟାୟାମ ଶିକ୍ଷା ଅଟଇ । ବର୍ତ୍ତମାନ ନାଳ ସଂସ୍କାର କାର୍ଯ୍ୟ ଲାଗିଅଛି ସତ୍ୟ କିନ୍ତୁ ଯେ ରୂପେ କାର୍ଯ୍ୟ ହେଉଅଛି ଅଧେ ବର୍ଷାକାଳ ଏହି ରୂପେ ଭୋଗ ହୋଇଯିବ । ଟାଉନ୍ ଉବରସିଅରଙ୍କୁ ତାକିଦ ଦେଲେ ବୋଧ ହୁଅଇ ସେ ଅଧିକ ମୂଲିଆ ଲଗାଇ ଅଳ୍ପ କାଳରେ ଏ କାର୍ଯ୍ୟଟି ଶେଷ କରିଦେବେ । ତାହା ହେଲେ ଅନେକ ଉପକାର ହେବ ।

## ବିଦେଶୀ : ପାକ୍ଷିକ ପତ୍ର

( ୨ୟ ଭାଗ, ୧୪-୦୭-୧୮୭୪, ସଂଖ୍ୟା ୭ )

କଟକ ନିମଚୌଡ଼ି ନିକଟରେ ଯେ ଜୁମ୍ମାମସ୍‌ଜିଦ୍ ଅଛି ତାହାର ସମ୍ମୁଖରେ ଦୋକାନମାନ ଭାଙ୍ଗିଦେଇ ମେଃ ବିମ୍‌ସ ଯେପରି ସମୀଦର ଶ୍ରୀବୃଦ୍ଧି ସାଧନ - ସହରର

ଶ୍ରୀ ବୃଦ୍ଧିସାଧନ - ସଡ଼କର ଶ୍ରୀବୃଦ୍ଧି ସାଧନ କରିଅଛନ୍ତି ସେହିପରି ଗୋଟିଏ ବହୁଦର୍ଶୀ ଏବଂ ଅତି ସୁବିଜ୍ଞ ରାଜନୀତିଜ୍ଞର କର୍ମ କରିଅଛନ୍ତି । ମସୀଦର ମଧ୍ୟରେ ଆଉ କୌଣସି ଗୁପ୍ତଚକ୍ର କେହି କରିପାରିବେ ନାହିଁ । ଆମ୍ଭେମାନେ ଏଥିପାଇଁ ମେଃ ବିମ୍‌ସଙ୍କୁ ପରିଣାମଦର୍ଶୀ ବୋଲି ପ୍ରଶଂସା କରୁଁ ।

## ଉତ୍କଳ ହିତୈଷିଣୀ

( ୪ର୍ଥ ଭାଗ, ୧୬-୦୭-୧୮୭୪, ସଂଖ୍ୟା ୧୩ )

### କଟକ ନଗର

ଶ୍ରୀଯୁକ୍ତ ବିମସ୍ ସାହେବ କଟକରେ ମାଜିଷ୍ଟ୍ରେଟ୍ ହୋଇ କଟକ ନଗରର ଶ୍ରୀବୃଦ୍ଧି କରିବାରେ ଅନେକ ଯତ୍ନ କରିଅଛନ୍ତି । ସେ ନିତ୍ୟ ସାୟଂ ପ୍ରାତଃ କାଳରେ ନଗର ଭ୍ରମଣ କରି ନଗର ବାସିମାନଙ୍କର ସ୍ୱାସ୍ଥ୍ୟରକ୍ଷା ପକ୍ଷରେ ନାନାନ ଉପାୟମାନ ରଚନା କରୁଅଛନ୍ତି । ଏ ନଗରର ପୁଷ୍କରିଣୀମାନଙ୍କର ସଂସ୍କାର କରି ମେଃ ବିମସ୍ ସାହେବ ନଗରବାସୀମାନଙ୍କର କୃତଜ୍ଞତାର ପାତ୍ର ହୋଇଅଛନ୍ତି । ରାଜପଥମାନ ପରିଷ୍କାର କରିବାରେ ମେଃ ବିମ୍‌ସ ସାହେବ ତ୍ରୁଟି କରିନାହାନ୍ତି ଏବଂ ଯେଉଁମାନେ ଆପଣା ଗୃହ ବର୍ଦ୍ଧନ କରି ରାଜପଥ ଆତ୍ମସାତ୍ କରିଅଛନ୍ତି ତାହା ପକ୍ଷରେ ତାହାଙ୍କର ବିଲକ୍ଷଣ ଦୃଷ୍ଟି ପଡ଼ିଅଛି । ଏ ନଗରର ପଥମାନ ଏରପ ସଂକୀର୍ଣ୍ଣ ହୋଇଅଛି ଯେ ଦୁଇଖଣ୍ଡ ଶକଟ ବିପରୀତ ଦିଗରେ ଗତାୟାତ କଲେ ପଥିକମାନଙ୍କର ଗମନାଗମନ ପକ୍ଷରେ କଷ୍ଟକର ହୋଇପଡ଼େ । ଆମ୍ଭେମାନେ ଭରସା କରୁଁ ଯେ ମାନ୍ୟବର ବିମସ୍ ସାହେବ ଯେରପ ରାଜପଥ ପରିଷ୍କାର କରିବାକୁ ଅଭିଳାସ କରିଅଛନ୍ତି, ସେହି ପ୍ରକାର ପଥମାନ ପ୍ରସ୍ତର ଦ୍ୱାରା ସଂସ୍କାର ନ କଲେ ପୂର୍ବ ନିର୍ମିତ ପଥମାନ ଅବିଲମ୍ବେ ନିତାନ୍ତ ବୂରବସ୍ଥାକୁ ପ୍ରାପ୍ତ ହେବ । ଏ ନଗରର ଅନେକ ଭୂମ୍ୟାଧିକାରୀମାନେ ଆପଣାର ଭୂମି ପତିତ ରଖିଥିବା ହେତୁରୁ ତହିଁରେ ନାନା ପ୍ରକାର ଗଛମାନ ଉପଜାତ ହୋଇଅଛି ଓ ଲୋକେ ସେ ସ୍ଥାନମାନଙ୍କରେ ବହିର୍ଦ୍ଦେଶ ଯିବାରେ ଓ ଏ ବର୍ଷା ସମୟରେପାଣି ଜମିବାରେ ସେ ସ୍ଥାନମାନ ନିତାନ୍ତ ଜଘନ୍ୟ ଓ ଅସ୍ୱାସ୍ଥ୍ୟକର ହୋଇ ପଡ଼ିଅଛି । ଅତଏବ ଉକ୍ତ ସ୍ଥାନମାନଙ୍କ ପ୍ରତି ଆମ୍ଭମାନଙ୍କର ମାଜିଷ୍ଟ୍ରେଟ ସାହେବଙ୍କର ଦୃଷ୍ଟି ପଡ଼ିବାର ଉଚିତ । ଏ ନଗରରେ ଲୋକେ ସାଧାରଣତଃ ଆପଣାର ଗୋବତ୍ସମାନ ଛାଡ଼ିଦେଇ ଥାନ୍ତି ; ସେମାନେ ରାଜପଥରେ ସର୍ବଦା ଭ୍ରମଣ କରନ୍ତି ; ତହିଁରେ ରାଜପଥରେ ଗମନାଗମନ ପକ୍ଷରେ ଦୁରୁହ ଓ କଷ୍ଟକର ଓ ମଧ ରାଜପଥ ଅପରିଷ୍କାର ହୁଅଇ ; ଅତଏବ ଏ ବିଷୟରେ ଆମ୍ଭମାନଙ୍କର ମାଜିଷ୍ଟ୍ରେଟଙ୍କର ଦୃଷ୍ଟିପାତ ହେବାର ବିଧେୟ

ହେଉଅଛି । ବହୁକାଳରୁ ଏ ନଗରର ବର୍ଷାର ଅତିରିକ୍ତ ଜଳର ଗମନାଗମନ ନିମିତ୍ତ ଯେ ପାଣିର ମାହାରା ଥିଲା ତାହା ବର୍ତ୍ତମାନ ବନ୍ଦ ହେବାର ନାନାନ ସ୍ଥାନରେ ପାଣି ଜମୁଅଛି ଓ ପାଣି ଜମିବାରୁ ନଗରର ସ୍ଥାନେ ୨ ବର୍ଷ ସମୟରେ ନିତାନ୍ତ ଅସ୍ୱାସ୍ଥ୍ୟକର ହୋଇପଡ଼େ ; ପ୍ରତିବର୍ଷ ରାଜପଥ ପାର୍ଶ୍ୱରେ ନୟନଯୋଡ଼ି ପରିଷ୍କାର ହୁଅଇ ସତ୍ୟ ମାତ୍ର ତହିଁରେ ବର୍ଷାର ଅତିରିକ୍ତ ପାଣି ଉତ୍ତମରୂପେ ନିସତ ହୁଅଇ ନାହିଁ, କିମ୍ବା ଉକ୍ତ ପାଣି ଅବାଧରେ ପୂର୍ବ ଖୋଦିତ ସପ୍ତାଝିଲ ଓ ଗୁପ୍ତିପୁଲରେ ପଡ଼ଇ ନାହିଁ । ପୂର୍ବେ ଲାଲବାଗ ହତାଠାରୁଁ ; ବର୍ତ୍ତମାନ ସ୍ୱାଭାବିକ ପାଣିପଥ ବନ୍ଦ ହେବାର ଯେଉଁ ବର୍ଷ ଅତିରିକ୍ତ ବର୍ଷା ହୁଅଇ ସେ ବର୍ଷ ଉକ୍ତ ପଥ ପାର୍ଶ୍ୱ ଗୃହମାନ ଭଗ୍ନ ହୁଅଇ । ଅତଏବ ଆମ୍ଭମାନଙ୍କର ମାଜିଷ୍ଟ୍ରେଟ ନାନୀନ କାର୍ଯ୍ୟଦ୍ୱାରା ଏ ଯେରୁପ ନଗରର ଶୋଭାବର୍ଦ୍ଧନ କରୁଅଛନ୍ତି ଓ ଯେରପ ଏ ନଗରସ୍ଥ ଜୁମା ମସଜିଦ୍ ନିକଟବର୍ତ୍ତୀ ଗୃହମାନ ଭଗ୍ନକରି ମସଜିଦ୍‌କୁ ପଥିକମାନଙ୍କର ନୟନ ଗୋଚର କରି ବାଲୁବଜାରର ଶୋଭାବର୍ଦ୍ଧନ କରିଅଛନ୍ତି ସେହିପ୍ରକାର ଉକ୍ତ ଝିଲମାନ ସଂସ୍କାର କରି ମେଃ ବିମ୍‌ସ ସାହେବ ନଗରର ଶୋଭା ବର୍ଦ୍ଧନ କରନ୍ତୁ ଓ ଲୋକମାନଙ୍କର ସ୍ୱାସ୍ଥ୍ୟରକ୍ଷା ପକ୍ଷରେ ଯତ୍ନ କରନ୍ତୁ ; ଏହି ଆମ୍ଭମାନଙ୍କର ଇଚ୍ଛା ।

## ଉତ୍କଳ ଦୀପିକା ସାପ୍ତାହିକ ସମ୍ବାଦ

( ୯ମ ଭାଗ, ୧୮-୦୭-୧୮୭୪, ସଂଖ୍ୟା ୨୯ )

ପୂର୍ବେ ବତୀଘରଠାରେ ଗୋଟିଏ ସରକାରୀ ଯାହାଜ ଥିଲା ଓ ତଦ୍ୱାରା ବାଣିଜ୍ୟ ସାମଗ୍ରୀର ଗତାୟାତରେ ବିଶେଷ ସୁବିଧା ହେଉଥିଲା ବର୍ତ୍ତମାନ ସରକାର ସେ ଯାହାଜ ଅନ୍ୟ ସ୍ଥାନକୁ ନେଇ ଯିବାରୁ ଏହା ମହାଜନ ଓ ସର୍ବସାଧାରଣଙ୍କର ବିଶେଷ କଷ୍ଟ ଓ କ୍ଷତି ହେଉଅଛି । ଏ ଯୋଗୁଁ ଶ୍ରୀଯୁକ୍ତ ବିମ୍‌ସ ସାହେବ ଗୋଟିଏ ଯାହାଜ ବତୀଘର ବନ୍ଦରକୁ ଅଣାଇବାର ଯଥେଷ୍ଟ ଯତ୍ନ କରୁଅଛନ୍ତି । ପ୍ରଶଂସନୀୟ ।

## ଉତ୍କଳ ଦୀପିକା

( ୯ମ ଭାଗ, ୨୫-୦୭-୧୮୭୪, ସଂଖ୍ୟା ୩୦ )

ଆମ୍ଭମାନଙ୍କର ଜଜ୍ ସାହେବ ଇଂରାଜୀ ଅକ୍ଷରରେ (ଯାହାସବୁ ରୋମୀୟ ଅକ୍ଷର ବୋଲାଯାଏ) ଓଡ଼ିୟାଭାଷା ଲେଖିବାର ନିୟମ ପ୍ରଚଳିତ କରିବାକୁ ଦୃଢ଼କଳ୍ପ ହୋଇ ଖଣ୍ଡେ ପୁସ୍ତକ ମୁଦ୍ରିତ କରାଇ ଅବଧାନମାନଙ୍କୁ ବିତରଣ କରିଅଛନ୍ତି ଏବଂ ସ୍ୱୟଂ

ସେମାନଙ୍କୁ ଶିକ୍ଷା ଦେଉଅଛନ୍ତି । କେମନ୍ତ ଅଳ୍ପକାଳ ମଧ୍ୟରେ ଇଂରାଜୀ ଅକ୍ଷରରେ ଏଠାଲୋକେ ଓଡ଼ିୟା ଲେଖିପାରିବେ ଏହା ଶିକ୍ଷା ଦେବା ପାଇଁ ସେ ଏମନ୍ତ ଯତ୍ନଶୀଳ ହୋଇଅଛନ୍ତି ଯେ ଏ ପକ୍ଷରେ କିଛି ମାତ୍ର ପରିଶ୍ରମ କରିବାରେ ତ୍ରୁଟି କରୁନାହାନ୍ତି । ଏପରି ଚାଟଶାଳୀରେ ପଢ଼ିବା ଉପଯୋଗୀ ଏକଖଣ୍ଡ ବ୍ୟାକରଣ ଏବଂ ଏକ ଖଣ୍ଡ ସାହିତ୍ୟ ପୁସ୍ତକ ସଂକଳନ କରୁଅଛନ୍ତି । ସାହିତ୍ୟ ପୁସ୍ତକଖଣ୍ଡ ଆରବୀୟ ଉପନ୍ୟାସରୁ ଅନୁବାଦିତ ହୋଇଅଛି । ଫଳ ଯାହା ହେଉ ମାତ୍ର ସାହେବଙ୍କ ଅଧ୍ୟବସାୟ ଓ ଉତ୍ସାହ ଦେଖି ଆମ୍ଭେମାନେ ଚମତ୍କୃତ ହୋଇଅଛୁଁ । ଦେଶୀୟ ଲୋକଙ୍କଠାରେ ଯେବେ କିଞ୍ଚିତରେ ଏସବୁ ଗୁଣ ଥାଆନ୍ତା ତେବେ ଉତ୍କଳର ଉନ୍ନତି ସକାଶେ କାହାରିକୁ ଚିନ୍ତିତ ହେବାକୁ ପଡ଼ନ୍ତା ନାହିଁ ।

## ଉତ୍କଳ ଦୀପିକା

( ୯ମ ଭାଗ, ୨୨-୦୮-୧୮୭୪, ସଂଖ୍ୟା ୩୪ )

### ବର୍ଷା ଓ ନଗର ରକ୍ଷା

ପ୍ରତିବର୍ଷ ବର୍ଷାକାଳରେ କଟକ ନଗରର ମହାଦୁର୍ଦ୍ଦଶା ଉପସ୍ଥିତ ହୁଅଇ । ଏ ବର୍ଷ ମଧ୍ୟ ସେହିପରି ହୋଇଅଛି । ବରଂ ବର୍ଷା ଅଧିକ ହେବାରୁ ଅଧିକ ଘରଦ୍ୱାର ଭାଙ୍ଗି ପଡ଼ିଅଛି ଓ ଅନେକ ସ୍ଥାନରେ ଅନ୍ୟାନ୍ୟ ବର୍ଷାପେକ୍ଷା ଅଧିକ ଜଳ ଜମା ହୋଇ ନାନା ପ୍ରକାର କ୍ଳେଶର କାରଣ ହୋଇଅଛି । ହାକିମମାନେ ବର୍ଷକୁ ବର୍ଷ ଯେ ଯାହା ବୁଦ୍ଧି ଓ କ୍ଷମତା ଅନୁସାରେ ଉପାୟ କରିବାକୁ ତ୍ରୁଟି କରି ନାହାନ୍ତି ତଥାଚ ଏ ଦୁର୍ଦ୍ଦଶାରୁ ନଗର ମୁକ୍ତ ହେଉନାହିଁ । ତହିଁର କାରଣ ଏହି ଜଣାଯାଏ ଯେ ନଗରର ଯେଉଁ ଅଂଶରେ ଯେଉଁ ବର୍ଷ ହାକିମଙ୍କର ସୁଦୃଷ୍ଟି ପଡ଼ିଅଛି ସେହି ଅଂଶରେ ଉପକାର ନିମିତ୍ତ କିଛି ଉପାୟ ହୋଇଅଛି । ସମୁଦାୟ ନଗରର ଜଳ ନିକାଶି ପକ୍ଷରେ କୌଣସି ବୃହତ୍ ଉପାୟ ଅବଧି କେହି ଭାବନା କରି ନାହାନ୍ତି । ସିଟି ଡ୍ରେନେଜ୍ ନାମକ ନାଳ କି ଯାହା ସୂତାହାଟ ତଳଦେଇ ବକ୍ସିବଜାର ବାଟେ କାଠଯୋଡ଼ି ନଦୀ ସଙ୍ଗରେ ମିଶି ଅଛି ତଦ୍ୱାରା ନଗରର ଏକ ଅଂଶର ଜଳ ବାହାରି ଯିବାର ଉପାୟ ହୋଇଅଛି ସତ୍ୟ ମାତ୍ର ଅପର ଅଂଶର ଜଳ ବାହାରି ଯିବାର କୌଣସି ଉପାୟ ହୋଇନାହିଁ । ଅନୁମାନ ହୁଅଇ ଯେ ଅନ୍ୟ ସବୁ ଦିଗରୁ କରନାଳମାନ ଏ ନାଳରେ ଯୋଗ ହେଲେ ସହରର ବହୁଜଳ ବାହାରି ଯାଇପାରେ

କିନ୍ତୁ କି ଉପାୟରେ ତାହା ହେବ ଆମ୍ଭେମାନେ କହିନପାରୁ । କଟକ ନଗରର ଅବସ୍ଥା ବିଶେଷ ପ୍ରକାରର ଅଟଇ । ଏହାର ପ୍ରାୟ ଚତୁର୍ଦ୍ଦିଗରେ ନଦୀ ଓ ସେ ନଦୀମାନ ବିଶେଷରେ କାଠଯୋଡ଼ି ନଦୀ ବୃଦ୍ଧି ହେଲେ ନଗର ଉପରେ ହା୫/୭ତ ଜଳ ଛିଡ଼ା ହୁଅଇ । ବର୍ଷା ପଛେ ୨ ପ୍ରାୟ ବଢ଼ଇ ସୁତରାଂ ଯେତେବେଳେ ନଗରରେ ବର୍ଷାପାଣି ଭରତି ହୁଅଇ ସେତେବେଳେ ନଦୀ ଜଳ ତିହଁରେ ଅଧିକ ଉଚ୍ଚ ଥିବାରୁ ନଗରର ବର୍ଷାପାଣି ବାହାରିଯିବା ତେଣିକି ଥାଉ ନଦୀଜଳ ନଗରରେ ପ୍ରବେଶ କାରିବାର ଶଙ୍କା ହୁଅଇ । ନିତାନ୍ତ ପକ୍ଷରେ ନଦୀଜଳ ଠେସି ଦେବାରୁ ନାଳ ବାଟେ ବର୍ଷାପାଣି ନଦୀକୁ ଯାଇ ନ ପାରେ ଓ ନଦୀ ନ ଛାଡ଼ିଲେ ନଗରର ପାଣି ବାହାରିଯିବାର ଉପାୟ ନାହିଁ । ବୋଧହୁଅଇ ଏ ଅନିଷ୍ଟଟି ନିବାରଣ ହେବାର ବଡ଼ କଠିନ ତେବେ ନଦୀ ଛାଡ଼ିଲେ ନଗରର ପାଣିସବୁ ବାହାରି ଯିବାର ଉପାୟ ହୋଇପାରେ ଓ ଯେବେ ତେତକ ହୁଅଇ ତେବେ ମଧ ଅନେକ ଉପକାର ଅଛି । ଆମ୍ଭମାନଙ୍କର ବର୍ତ୍ତମାନ ମାଜିଷ୍ଟ୍ରେଟ୍ ବିମ୍ସ୍ ସାହେବ ନଗର ସଂସ୍କାର ବିଷୟରେ ଅତ୍ୟନ୍ତ ଯତ୍ନଶୀଳ ଓ ସେ ଯେମନ୍ତ ପ୍ରତିଦିନ ପ୍ରାତଃ କାଳରେ ନଗରରେ ଭ୍ରମଣ କରୁ ଅଛନ୍ତି ଏମନ୍ତ ଶ୍ରୀଯୁକ୍ତ ଶୋର ସାହେବଙ୍କର ଉତ୍ତାରୁ କାହାରିକୁ କରିବାର ଦେଖା ଯାଇନାହିଁ । ମାଜିଷ୍ଟ୍ରେଟ୍ ସାହେବ ସ୍ୱୟଂ ନଗରର ଦୁରବସ୍ଥା ବୁଲି ଦେଖୁ ଅଛନ୍ତି ମଙ୍ଗଳର ବିଷୟ ଅଟଇ ଓ ଆମ୍ଭେମାନେ ତାହାଙ୍କଠାରେ ଏତିକି ପ୍ରାର୍ଥନା କରୁ ଯେ ସେ ଏପର୍ଯ୍ୟନ୍ତ କୌଣସି ବୃହତ୍ କାର୍ଯ୍ୟର ଅନୁଷ୍ଠାନ କରନ୍ତୁ କି ଯହିଁରେ ନଗରର ଚାରିଦିଗର ଜଳ ବାହାରି ଯାଇପାରେ । ଏଥିପାଇଁ ଆବଶ୍ୟକ ହେଲେ ଜଣେ ସରବେଅର କିମ୍ବା ଇଞ୍ଜିନିୟର ସାହାଯ୍ୟ ନେଉନ୍ତୁ ଯେ ସେ ସବୁ ଆଡ଼ର ଲେବଲ ମାପ ନେଇ ପାଣି ବାହାରିଯିବାର ଉପଯୁକ୍ତ ମାର୍ଗ ନିଶ୍ଚୟ କରିଦେବ । ଏପରି କାର୍ଯ୍ୟ ଟାଉନ ଓବରସିଅର ପ୍ରଭୃତିଙ୍କ ଦ୍ୱାରା ହୋଇନପାରେ । ଏଥପାଇଁ ବିଶେଷ ସୁଶିକ୍ଷିତ ଲୋକର ଲୋଡ଼ା । ଟାଉନ ଟାକସ ଟଙ୍କା ନାନାଦି ସାମନ୍ୟ କାର୍ଯ୍ୟରେ ବ୍ୟୟ ହୋଇ ଯାଉଅଛି କିନ୍ତୁ ଯେବେ ଏପରି ଗୋଟିଏ ବହୁବ୍ୟୟ ସାଧ କାର୍ଯ୍ୟ ତଦ୍ୱାରା ନିର୍ବାହ ହେବ ତେବେ ନଗରର ଚିରସ୍ଥାୟୀ ଉପକାର ହେବ ଏବଂ ଶ୍ରୀଯୁକ୍ତ ବିମ୍ସ ସାହେବଙ୍କର ନଗରର ଭ୍ରମଣର ଶ୍ରମ ସଫଳ ହେବ ଓ ଏ କାର୍ଯ୍ୟଟି ତାହାଙ୍କର କୀର୍ତ୍ତି ସ୍ୱରୂପ ବହୁ କାଳକୁ ରହିଯିବ ।

## ଉତ୍କଳ ଦୀପିକା

( ୯ମ ଭାଗ, ୨୧-୧୧-୧୮୭୪, ସଂଖ୍ୟା ୪୬ )

ଗତ ରବିବାରଠାରୁ ରାଜାମାନେ ଏ ନଗରକୁ ଆସିବାର ଆରମ୍ଭ କରିଅଛନ୍ତି ଓ ଏହାଙ୍କ ଆଗମନରେ ଆମ୍ଭମାନଙ୍କର କଲେକ୍‌ଟର ଶ୍ରୀଯୁକ୍ତ ବିମ୍‌ସ୍ ସାହେବ ବଡ଼ ବ୍ୟସ୍ତରେ ପଡ଼ି ଅଛନ୍ତି କି ରୂପେ ରାଜାମାନଙ୍କୁ ଏଠାରେ ନିର୍ବାହ କରି ବିଦାୟ କରିବେ ଏଥିର ଭଲ ଉପାୟ ପାଉନାହାନ୍ତି ଓ ଚାରିଆଡ଼ୁ ଏମନ୍ତ ଝଞ୍ଜଟ ପଡ଼ିଅଛି ଯେ ଭାବିବାକୁ ମସ୍ତକରେ ସ୍ଥାନ ସୁଦ୍ଧା ନାହିଁ । ପ୍ରତ୍ୟେକ ରାଜାଙ୍କ ପାଖରେ ଜଣେ ଲେଖାଏଁ କନଷ୍ଟବଳ ରଖାଇ ଦେଇଅଛନ୍ତି ଓ ଯେବେ ରାଜାଙ୍କ ସମ୍ମାନସକାଶେ ତାହା ହୋଇ ଥାଏ ତେବେ ସୁଖର ବିଷୟ ଅଟଇ ମାତ୍ର ଶୁଣାଯାଏ ଯେ ସରକାରୀ ଅମଲା ଚପରାଶି କନଷ୍ଟବଳ ପ୍ରଭୃତି ଚାକର ଓ ନଗରବାସୀମାନେ ଯେମନ୍ତ ରାଜାଙ୍କ ନିକଟକୁ ପ୍ରାର୍ଥନା କରି ନ ଆସନ୍ତି କିମ୍ବା ପାରିତୋଷିକ ନ ନିଅନ୍ତି ଏହି କଥାର ସାବଧାନ ନିମିତ୍ତ କନଷ୍ଟବଲ ପ୍ରହରା ହୋଇ ଅଛନ୍ତି । ଏ ଉପାୟ କେତେଦୂର ସଫଳ ହେବ ପାଠକମାନେ ବିବେଚନା କରିବେ । ଯେପରି ରାଜାମାନେ ଅଧିକ ଲୋକ ସଙ୍ଗରେ ରଖି ନ ପାରନ୍ତି ଏଥିପାଇଁ ବଡ଼ ତାକିତ ଦେଉଅଛି । ଅଧିକ ଲୋକ ଜମାହେଲେ ସହରରେ ଖାଦ୍ୟ ଦ୍ରବ୍ୟାଦି ଦୁର୍ମୂଲ୍ୟ ହେବ ଓ ଅନ୍ୟାନ୍ୟ ଅନିଷ୍ଟ ଘଟିପାରିବ କି ଯାହା ନିବାରଣ କରିବାକୁ ଜିଲାର ମାଜିଷ୍ଟ୍ରେଟ୍ ସମର୍ଥ ହେବେ ନାହିଁ । ମହାମାନ୍ୟ ଲର୍ଡ଼ ମେଓଙ୍କ ସନ୍ଦର୍ଶନ ଅପେକ୍ଷାରେ ତିନିବର୍ଷ ତଳେ ଯେତେବେଳେ ଏ ନଗରରେ ଭାରି ସମାରୋହ ହୋଇଥିଲା ତେତେବେଳେ ଯେଉଁମାନେ ଏ ନଗରରେ ଥିଲେ ସେମାନେ ବିଲକ୍ଷଣ ଜାଣନ୍ତି ଯେ ଏରୂପ ସମାରୋହର ଦୁର୍ଭିକ୍ଷ ପଡ଼ଇନାହିଁ ଯଦ୍ୟପି କେତେକ ପ୍ରକାର ଖାଦ୍ୟ ଦ୍ରବ୍ୟର ମୂଲ୍ୟ କିଛି ବଢ଼ିଥିଲା କି ଯେମନ୍ତ ବର୍ତ୍ତମାନ ମଧ ବଢ଼ିଅଛି ମାତ୍ର ତଦ୍ୱାରା ନଗରବାସୀ କ୍ଷୁଦ୍ର ବ୍ୟବସାୟୀଙ୍କ ଲାଭ ଭିନ୍ନ ରାଜାଙ୍କର ଧନାଗାର ଶୂନ୍ୟ ହୋଇନାହିଁ । ରାଜାମାନେ ଯାହାର ଯେମନ୍ତ ଆଧି ବା ପ୍ରୟୋଜନ ତାହାକୁ ଚାହିଁ ସଙ୍ଗରେ ମନୁଷ୍ୟ ଆଣିଅଛନ୍ତି ଓ ସେମାନଙ୍କର ନିର୍ବାହର ଉପାୟ ମଧ କରିଅଛନ୍ତି । ସେମାନେ କି ସାମାନ୍ୟ ଲୋକ ପ୍ରାୟ ହାତରେ ମୁଣି ଝୁଲାଇ ଆସି ଡାକ ବଙ୍ଗଳାରେ ଖାଇ ନିର୍ବାହ ହୋଇପାରିବେ ? ରାଜାମାନଙ୍କୁ ନିମନ୍ତ୍ରଣ କରିଆଣି ତାହାଙ୍କ ଉପରେ ଏତେ କର୍ତ୍ତୃତ୍ୱ କାହିଁକି ? ଆମ୍ଭମାନଙ୍କ ବିବେଚନାରେ ଗଡ଼ଜାତି ଲୋକ ଯେତେ ନଗର ଦେଖିବାକୁ ଆସନ୍ତି ତେତେଭଲ ଓ ଏମନ୍ତ ସୁଯୋଗ ସେମାନେ ଆଉ କେବେ ପାଇବେ ଯେ ନଗରର ଉନ୍ନତି ଦେଖି ଆପେ ଉନ୍ନତ ହେବାର ଚେଷ୍ଟା କରିବେ ।

## ଉତ୍କଳ ଦୀପିକା

( ୧୦ ମ ଭାଗ, ୧୫-୦୫-୧୮୭୫, ସଂଖ୍ୟା ୨୦ )

### ସାପ୍ତାହିକ ସମ୍ବାଦ

ଆଜିକାଲି ଏନଗରରେ ଅନେକ ପୋଖରି ମରାମତି କାର୍ଯ୍ୟ ଲାଗିଅଛି ଓ ଏସବୁ ସରକାରୀ ବ୍ୟୟରେ ହେଉଅଛି । ବିମ୍‌ସ ସାହେବଙ୍କ ମିଉନିସିପାଲ କାର୍ଯ୍ୟ ମଧ୍ୟରେ ଏହିଟି ପ୍ରକୃତ ହିତକର ସୁତରାଂ ପ୍ରଶଂସନୀୟ କାର୍ଯ୍ୟ ଅଟଇ ।

## ଉତ୍କଳ ଦୀପିକା

( ୧୧ଶ ଭାଗ, ୦୪-୧୨-୧୮୭୫, ସଂଖ୍ୟା ୪୮ )

ଆମ୍ଭେମାନେ ଆନନ୍ଦର ସହିତ ଅବଗତ ହେଲୁଁ ଯେ ଏଥର ଆମ୍ଭମାନଙ୍କର କଲେକ୍‌ଟର ଶ୍ରୀଯୁକ୍ତ ବିମ୍‌ସ ସାହେବ ପଟିୟା କିଲାକୁ ଗସ୍ତ କରିବାକୁ ଯାଇ ସେଠାରେ ରାଜାଙ୍କୁ ଉତ୍ପନ୍ନ ଯିବାର ମାର୍ଗରୁ ଫେରାଇ ଆଣିବାକୁ ବିସ୍ତର ଯତ୍ନ କରୁଅଛନ୍ତି । ପଟିୟା ରାଜାଙ୍କର ଗୁଣ ଗୌରବମାନ ଏଠା ଲୋକଙ୍କୁ ଅବିଦିତ ନାହିଁ ଓ ପୂର୍ବେ ଏହି ପତ୍ରିକାରେ ତହିଁର କେତେକ ବର୍ଣ୍ଣନା ହୋଇଥିଲା । ରାଜା ଆପଣାରାଜ୍ୟର ଅଧିକାଂଶ ବିକ୍ରୟ କରି ସୁଦ୍ଧା ଋଣରୁ ମୁକ୍ତ ହୋଇନାହାନ୍ତି ବରଂ ଏତେବେଳଯାଏ ଋଣ କରିବାକୁ କ୍ଷାନ୍ତ ନାହାନ୍ତି ଓ ସେ ଅର୍ଥ କୌଣସି ଉତ୍ତମ କାର୍ଯ୍ୟରେ ନ ଲଗାଇ ଚାଟୁକାରଙ୍କ ପ୍ରତିପାଳନ ଓ ଅନ୍ୟାନ୍ୟ ଅପବ୍ୟୟରେ ଉଡ଼ାଇ ଦେଉଅଛନ୍ତି । ଏସବୁ ବ୍ୟାପାର କଲେକ୍‌ଟର ସାହେବ ଦେଖି ତାହାଙ୍କଠାରୁ ଖଣ୍ଡେ ଏକରାରନାମା ଲେଖାଇ ନେଇଅଛନ୍ତି ଯେ ଋଣ ପରିଶୋଧ ହେବାଯାଏ ସେ କଲେକ୍ଟର ସାହେବଙ୍କ ବନ୍ଦୋବସ୍ତରେ ଚାଲିବେ ଓ କୌଣସି ବିଷୟରେ ହସ୍ତକ୍ଷେପ କିମ୍ବା ଆଉ ଋଣ ଗ୍ରହଣ କରିବେ ନାହିଁ । ରାଜ୍ୟର ନୂତନ ବନ୍ଦୋବସ୍ତ କାର୍ଯ୍ୟ ଉପସ୍ଥିତ ଅଛି ଯେ ତାହା କଲେକ୍‌ଟର ସାହେବଙ୍କ ଯୋଗେ ସମ୍ପନ୍ନ ହେବ । ରାଜାଙ୍କର ଗ୍ରହମାନେ ଅବଧି ବଳବାନ୍ ଅଛନ୍ତି ଯେ ଏ ପ୍ରକାର ଏକରାରନାମା ଲେଖିଦେଇ ସେ କଲେକ୍‌ଟରଙ୍କୁ ଆତ୍ମସମର୍ପଣ କଲେ ନୋହିଲେ ତାହାଙ୍କୁ କ୍ଳେଶ ଭୋଗ କରିବାକୁ ହୋଇଥାନ୍ତା ।

## ଉତ୍କଳ ଦୀପିକା

( ୧୨ ଶ ଭାଗ, ୧୭-୦୩-୧୮୭୭, ସଂଖ୍ୟା ୧୧ )

ବୋର୍ଡ଼ର ପ୍ରଧାନ ମେମ୍ବର ଶ୍ରୀଯୁକ୍ତ ସକ୍ ସାହେବ ଶୀଘ୍ର କର୍ମତ୍ୟାଗ କରିବେ ଏବଂ ଦ୍ୱିତୀୟ ମେମ୍ବର ଶ୍ରୀଯୁକ୍ତ ମନୀ ସାହେବ ଛ'ମାସ ଛୁଟୀ ନେବେ । ଏମାନଙ୍କ

କର୍ମରେ ଶ୍ରୀଯୁକ୍ତ ବକଲାଣ୍ଡ ଏବଂ ଶ୍ରୀଯୁକ୍ତ ରେବନସା ସାହେବମାନେ ନିଯୁକ୍ତ ହେବାର ସମ୍ଭାବନା ଅଛି କିନ୍ତୁ ଡେଲି ନିୟୁଜ ଶୁଣିଅଛନ୍ତି କି ଏକଜଣଙ୍କ କର୍ମରେ ବଙ୍ଗଳା ଗଭର୍ଣ୍ଣମେଣ୍ଟର ସେକ୍ରେଟାରୀ ରେନଲାର୍ଡ୍ ସାହେବ ନିଯୁକ୍ତ ହେବାର କଥା ଅଛି ଓ ଆଉ କେହି କହନ୍ତି କି ବକଲାଣ୍ଡ ସାହେବ ବୋର୍ଡ଼କୁ ଯିବାକୁ ଇଚ୍ଛା ନ ରଖନ୍ତି । ତାହାହେଲେ ରେବନସା ସାହେବଙ୍କର ପଦୋନ୍ନତିର ଅନେକ ସମ୍ଭାବନା ଅଛି ଓ ତାହା ଘଟିଲେ ଆମ୍ଭେମାନେ ଅତ୍ୟନ୍ତ ଅନନ୍ଦିତ ହେବୁଁ କାରଣ ଏକପକ୍ଷରେ ସେ ବୋର୍ଡ଼ରେ ଥାଇ ଓଡ଼ିଶାର ମଙ୍ଗଳ କରିବାକୁ ଅଧିକ କ୍ଷମତା ପାଇବେ ଏବଂ ପକ୍ଷାନ୍ତରେ ଓଡ଼ିଶାରେ ଅତି ଦୀର୍ଘକାଳ ରହିବାରୁ କେତେଗୁଡ଼ିଏ ତାହାଙ୍କର କୁସଂସ୍କାର ଜନ୍ମଅଛି ତାହା ଆଉ ରହିବ ନାହିଁ ।

ଶ୍ରୀଯୁକ୍ତ ରେବନ୍‌ସା ସାହେବ ବୋର୍ଡ଼କୁ ଗଲେ ଶ୍ରୀଯୁକ୍ତ ବିମ୍‌ସ ସାହେବ କମିଶନର ଏବଂ ଶ୍ରୀଯୁକ୍ତ ଟଏନବୀ ସାହେବ କଟକର କଲେକ୍ଟର ହେବେ ଓ ସମସ୍ତ ବନ୍ଦୋବସ୍ତରେ ଆମ୍ଭମାନଙ୍କର ଲାଭ ଅଛି ସନ୍ଦେହ ନାହିଁ ।

## ଉତ୍କଳ ଦୀପିକା

(୧୨ଶ ଭାଗ, ୩୧.୩.୧୮୭୭, ସଂଖ୍ୟା ୧୩)

ଆମ୍ଭେମାନେ ଯାହା କହିଥିଲୁଁ ତାହାର ପ୍ରତ୍ୟେକ୍ଷ ହେଲା ଓ ତହିଁରେ ଆମ୍ଭମାନଙ୍କର ବାଞ୍ଛା-ପୂର୍ଣ୍ଣହେଲା । ଗତ ମଙ୍ଗଳବାର ଶ୍ରୀଯୁକ୍ତ ବୀମ୍‌ସ ସାହେବ ଓଡ଼ିଶାର କମିଶ୍ନରୀ ଏବଂ ଟଏନ୍‌ବୀ ସାହେବ କଟକରେ କଲେକ୍ଟରୀ କର୍ମର ଚାର୍ଯ ନେଲେ । ଏମାନେ ସମ୍ପ୍ରତି ଉକ୍ତ ପଦମାନଙ୍କରେ ଏକଟିଂ ନିଯୁକ୍ତ ହେବାର ଶୁଣାଯାଏ, ମାତ୍ର କେତେଦିନ ସକାଶେ ତାହା କୁହାଯାଇନପାରେ । ଗେଜେଟ୍ ଆସିଲେ ସବିଶେଷ ଜଣାଯିବ ମାତ୍ର ନିଶ୍ଚୟ ବୋଧ ହୁଅଇ ଯେ ଶ୍ରୀଯୁକ୍ତ ରେବନ୍‌ସା ସାହେବ ଫେରି ନ ଆସିଲେ ଏ ବନ୍ଦୋବସ୍ତ ଅନ୍ୟଥା ହେବାର କୌଣସି ହେତୁ ନାହିଁ । ଶ୍ରୀଯୁକ୍ତ ବୀମ୍‌ସ ସାହେବ ଗତ ସାତବର୍ଷରୁ ବାଲେଶ୍ୱର ଓ କଟକରେ ଜିଲ୍ଲାର ଭାର ନିର୍ବାହ କରିଅଛନ୍ତି ଓ ଏଠାଲୋକଙ୍କ ଠାରେ ବିଶେଷ ପରିଚିତ । ଶ୍ରୀଯୁକ୍ତ ଟଏନ୍‌ବୀ ସାହେବ ମଧ ଅନେକଦିନ ଏ ଜିଲ୍ଲାରେ ଆସିଷ୍ଟାଣ୍ଟ ଓ ଜଏଣ୍ଟମାଜିଷ୍ଟ୍ରେଟ୍ ରହି ଏ ଜିଲ୍ଲାର ଅବସ୍ଥାରୁ ଉତ୍ତମରୂପେ ଅବଗତ ହୋଇଅଛନ୍ତି - ବିଶେଷ କରି ଇରିଗେଶନ ରେଭିନ୍ୟୁ ସୁପରିଟେଣ୍ଡେଣ୍ଟ କର୍ମରେ ଥାଇ ପ୍ରଜାଙ୍କର ଅବସ୍ଥା ପ୍ରତ୍ୟକ୍ଷ ଦେଖିଅଛନ୍ତି ଓ ତାହାଙ୍କଠାରେ ଅଧିକ ଦୟା ରଖିଥିବାର ଜଣାଯାଇଛି । ପ୍ରଜାମାନଙ୍କୁ ଭାଗ୍ୟବାନ ବୋଲିବାକୁ ହେବ ଯେ ତାଙ୍କର ବେଦନା ଯେ ବୁଝିପାରନ୍ତି ଏମନ୍ତ ଲୋକ ତାହାଙ୍କର ଅବ୍ୟବହିତ ଶାସନକର୍ତ୍ତା ହୋଇଅଛନ୍ତି ।

**(ସୌଜନ୍ୟ - ସମ୍ବାଦପତ୍ରରୁ ଓଡ଼ିଶାର କଥା)**

## ଉତ୍କଳ ଦୀପିକା

( ୧୨ଶ ଭାଗ, ୧୪-୦୪-୧୮୭୭, ସଂଖ୍ୟା ୧୫ )

ଗତ ସପ୍ତାହର କଲିକତା ଗଜେଟ୍‌ରେ ହାକିମଙ୍କ ପରିବର୍ତ୍ତନ ଆଜ୍ଞାମାନ ବାହାରିଅଛି । ତହିଁରୁ ଦେଖାଯାଏ ଯେ ବୋର୍ଡ଼ର ମେମ୍ବର ସାକ୍‌ସାହେବଙ୍କ କର୍ମରେ ଶ୍ରୀଯୁକ୍ତ ଡାମ୍ପିଅର ସାହେବ ନିଯୁକ୍ତ ହେଲେ ଓ ସେ ବିଲାତରୁ ଆସିବା ପର୍ଯ୍ୟନ୍ତ ଶ୍ରୀଯୁକ୍ତ ରେବନସା ସାହେବ ଉକ୍ତ କର୍ମରେ ଏକଟିଂ ରହିଲେ । ରେବନସା ସାହେବ ଯାବତ ଉକ୍ତ କର୍ମରେ ରହିଲେ ତାବତ ଶ୍ରୀଯୁକ୍ତ ବିମ୍‌ସ ସାହେବ ଓଡ଼ିଶାର କମିଶନର ଏବଂ ଶ୍ରୀଯୁକ୍ତ ଟଏନବୀ ସାହେବ କଟକର କଲେକ୍ଟର ନିଯୁକ୍ତ ହେଲେ ।

X X X

ଶ୍ରୀଯୁକ୍ତ ଡମ୍ପିଅର ସାହେବଙ୍କର ଛୁଟୀ ଆଉ ଚାରି ପାଞ୍ଚମାସ ଅଛି ଓ କଥିତ ହୁଅଇ ଯେ ସେ ଫେରି ଆସିଲେ ରେବନସା ସାହେବ ଛୁଟୀ ନେଇ ବିଲାତକୁ ଯିବେ ସୁତରାଂ ଓଡ଼ିଶା ସକାଶେ ଯେ ବନ୍ଦୋବସ୍ତ ହୋଇଅଛି ତାହା ଅଳ୍ପ କାଳ ସକାଶେ ନୁହଇ । ଫଳତଃ ବଡ଼ ସୁଖର ବିଷୟ ଯେ ଲେଫ୍‌ଟନେଣ୍ଟ ଗଭର୍ଣ୍ଣରଠାରୁ କଟକର କଲେକ୍‌ଟର ପର୍ଯ୍ୟନ୍ତ କେବଳ ଓଡ଼ିଆ ହାକିମମାନେ ନିଯୁକ୍ତ ହୋଇଅଛନ୍ତି ଏବଂ ଓଡ଼ଶା ପକ୍ଷେ ଏହା ଗୌରବର ବିଷୟ ଅଟଇ ।

## ଉତ୍କଳ ଦୀପିକା

( ୧୨ ଶ ଭାଗ, ୧୪-୦୪-୧୮୭୭, ସଂଖ୍ୟା ୧୫ )

### ସାପ୍ତାହିକ ସମ୍ବାଦ

ଶ୍ରୀଯୁକ୍ତ ବିମ୍‌ସ ସାହେବଙ୍କ ମାଜିଷ୍ଟ୍ରେଟ୍ ସମୟର ଶେଷ ପ୍ରଧାନ କାର୍ଯ୍ୟ ବଲରାମପୁରର ରାଜାଙ୍କ ଓ କେତେଜଣ ଚାକରଙ୍କୁ ଛ'ମାସ ଲେଖାଏଁ କଏଦ ଦେବା ହୋଇଥିଲା । ଏମାନଙ୍କ ଉପରେ ମଧୁପୁର ରାଜାଙ୍କ ପକ୍ଷରୁ ନାଲଶ ହୋଇଥିଲା ଯେ ଏମାନେ ସରହଦ ବନ୍ଦୀର ଚିହ୍ନ ସ୍ଥାନାନ୍ତରିତ ବା ଲୋପ କରିଥିଲେ । ଯାହା ହେଉ ଜଜ୍ ସାହବଙ୍କଠାରେ ଅପୀଲ ହେବାରେ ସେମାନେ ଖଲାସ ପାଇଅଛନ୍ତି ।

## ଉତ୍କଳ ଦୀପିକା

( ୧୩ ଶ ଭାଗ, ୨୬-୦୧-୧୮୭୮, ସଂଖ୍ୟା ୪ )

ମୃତ ହରିବାବୁଙ୍କ କର୍ମରେ ବାବୁ ନନ୍ଦକିଶୋର ଦାସ ଡେପୁଟୀ କଲେକ୍ଟର ନିଯୁକ୍ତ ହେଲେ । ସମସ୍ତେ ଜାଣିଥିଲେ ଯେ ବାବୁ ଜଗମୋହନ ବାବୁଙ୍କ ସକାଶେ କମିଶ୍ନର

ସାହେବ ଅନୁରୋଧ କରିଅଛନ୍ତି ସେ ଅବଶ୍ୟ ନିଯୁକ୍ତ ହେବେ । ମଝିରୁ ଏ ଭିଆଣ କିପରି ବାହାରିଲା ଆମ୍ଭେମାନେ ଅନୁମାନକରୁଁ ଯେ କମିଶ୍ନର ସାହେବଙ୍କ ସହିତ ଘରୋଇ ଚିଠୀ ଦ୍ୱାରା ଗବର୍ଣ୍ଣମେଣ୍ଟ ଏ ବନ୍ଦୋବସ୍ତ କରିଅଛନ୍ତି । ଆମ୍ଭମାନଙ୍କ ବିବେଚନାରେ ଏବନ୍ଦୋବସ୍ତଟି ବଡ଼ ମନ୍ଦ ହୋଇନାହିଁ ଓ ଯେବେ କମିଶନର ସାହେବ ନନ୍ଦ କିଶୋର ବାବୁଙ୍କ ସ୍ଥାନରେ ଆଉ ଏକଜଣ ଓଡ଼ିଆ ବାସୀଙ୍କୁ ଡେପୁଟୀ କଲେକ୍ଟର ପଦରେ ନିଯୁକ୍ତ କରାଇ ପାରିବେ ତେବେ ତାହାଙ୍କର ବନ୍ଦୋବସ୍ତ ସମସ୍ତଙ୍କର ସୁଖକର ହେବ ।

## ଉତ୍କଳ ଦୀପିକା

( ୧୨ ଶ ଭାଗ, ୦୫-୦୫-୧୮୭୭, ସଂଖ୍ୟା ୧୮ )

### ସାପ୍ତାହିକ ସମ୍ବାଦ

ବାବୁ ନାରାୟଣ ଚନ୍ଦ୍ର ନାୟକ ଖୋରଧାର ସବ୍‌ଡେପୁଟୀ ପଦରେ ଏକଟିଂ ନିଯୁକ୍ତ ହୋଇ ଗତ ମଙ୍ଗଳବାର ଏଠାରୁ ଉକ୍ତ ସ୍ଥାନକୁ ଯାତ୍ରା କଲେ । ବାବୁ ବଳରାମ ଦାସଙ୍କଠାରୁ ଚାର୍ଯ ନେବେ ଓ ବଳରାମ ଦାସ ସେ କର୍ମରୁ ବରଖାସ୍ତ ହୋଇ ଫେରି ଆସୁଛନ୍ତି । ଶ୍ରୀଯୁକ୍ତ ବିମ୍‌ସ ସାହେବ ତାହାଙ୍କ ଚରିତ୍ରରେ କୌଣସି ଦୋଷ ଦେଖି ଏପରି ବନ୍ଦୋବସ୍ତ କଲେ । ବଳରାମ ବାବୁ କୃତବିଦ୍ୟ ହୋଇ ଗୋଟିଏ ଅବିବେଚନାର କାର୍ଯ୍ୟକରି ଅବନତିକୁ ଲଭିଲେ ବଡ଼ ଦୁଃଖର ବିଷୟ ଅଟଇ ।

## ଉତ୍କଳ ଦୀପିକା

( ୧୨ ଶ ଭାଗ, ୨୬-୦୫-୧୮୭୭, ସଂଖ୍ୟା ୨୧ )

### ଓଡ଼ିଆ ତାଳପତ୍ର ସାହିତ୍ୟ ଉଦ୍ଧାରଣ କମ୍ପାନୀ

ବାଲେଶ୍ୱର ସମ୍ବାଦ ବାହିକାରୁ ଜଣାଗଲା ଯେ ଓଡ଼ିଆ ତାଳପତ୍ର ସାହିତ୍ୟ ଉଦ୍ଧାରଣ କମ୍ପାନୀ ନାମରେ ଗୋଟିଏ ନୂତନ କମ୍ପାନୀ ଏ ନଗରରେ ସ୍ଥାପିତ ହେବାର କଳ୍ପନା ହୋଇଅଛି, ଏଥର ମୂଳ ଧନ ଟ ୫୦୦ଙ୍କା ଓ ପ୍ରତ୍ୟେକ ଅଂଶ ଟ ୨୫ଙ୍କା ଲେଖାଏଁ ହେବ । ଶ୍ରୀଯୁକ୍ତ ବିମ୍‌ସ ସାହେବ ଏ କମ୍ପାନୀର ସହାୟ । ବାବୁ କାଳୀପଦ ବାନୁର୍ଯ୍ୟା ମୂଳାଧାର ଏବଂ ବାବୁ ବୈଦ୍ୟନାଥ ପଣ୍ଡିତରାୟ ବାହାଦୂର ଏ କମ୍ପାନୀର ଅଧକ୍ଷ ସମାଜର ସଭାପତି । ଓଡ଼ିଆ ଭାଷାର ଯେ ସମସ୍ତ ପ୍ରାଚୀନ ଗ୍ରନ୍ଥ ତାଳପତ୍ରରେ ଲେଖାଅଛି ସେ ସବୁକୁ ଛାପାକରି ବିକ୍ରୟ କରିବା ଏବଂ ଓଡ଼ିଆ ସହିତ୍ୟର ଅନ୍ୟାନ୍ୟ ପୁସ୍ତକ ମଧ ମୁଦ୍ରିତ କରିବା ଏ କମ୍ପାନୀର ଉଦ୍ଦେଶ୍ୟ ଅଟଇ । କାରଖାନାଟି ବଡ଼ ଧୁମଧାମର ଦିଶୁଅଛି, କାର୍ଯ୍ୟ କିପରି ଚଳିବ ଓ ଅଂଶିମାନଙ୍କର କି ଲାଭ ହେବ କମ୍ପାନୀର ନିୟମାବଳୀ

ଦେଖି ନଥିବାରୁ କହିନପାରୁ ଓ ମଧ୍ୟ ଆମ୍ଭମାନଙ୍କର ଏ ସମ୍ପର୍କରେ କିଛି କହିବାର ପ୍ରାୟ ଉଚିତ ନୁହଇ କାରଣ ବିଲକ୍ଷଣ ସମ୍ଭବ ହୁଅଇ ଯେ ଆମ୍ଭେମାନେ ପ୍ରକୃତ କଥା କହିଲେ ସୁଦ୍ଧା କେତେ ଲୋକ ତହିଁର ଭିନ୍ନ ଭାବ ଗ୍ରହଣ କରିବେ । ଏହି ହେତୁରୁ ଏ ପ୍ରସ୍ତାବର ମୂଳଧାର ସୁବିବେଚନା ପୂର୍ବକ ତାହା ଆମ୍ଭମାନଙ୍କ ନିକଟକୁ ପଠାଇ ନାହାନ୍ତି ।

## ଉତ୍କଳ ଦୀପିକା

( ୧୨ ଶ ଭାଗ, ୦୭-୦୭-୧୮୭୭, ସଂଖ୍ୟା ୨୭ )

## ଓଡ଼ିଶା ଗଡ଼ଜାତ

ଶ୍ରୀଯୁକ୍ତ ବିମ୍‌ସ ସାହେବ ଓଡ଼ିଶାର କମିଶନର ଓ ଗଡ଼ଜାତର ସୁପରିଟେଣ୍ଡେଣ୍ଟ ହେବାରେ ଗଡ଼ଜାତର ଅନେକ ମଙ୍ଗଳ ହେବାର ସୂଚକ ଦେଖା ଯାଉଅଛି । ସାହେବ ପ୍ରଶଂସିତଙ୍କର ଶୁଭରାଜ୍ୟ ଆରମ୍ଭ ହେବା ମାତ୍ରକେ ଅନେକ ଗଡ଼ଜାତର ପ୍ରଜାମାନେ ଏଠାକୁ ଆସି ଆବେଦନ ପତ୍ର ଦ୍ୱାରା ଆପଣା ୨ ଦୁଃଖ ଜଣାଇଲେ ଓ ଅବଧି ତହିଁର ସ୍ରୋତ ବନ୍ଦହୋଇ ନାହିଁ । କେହି ୨ ଅନୁମାନ କରିପାରନ୍ତି ଯେ ଶ୍ରୀଯୁକ୍ତ ବିମ୍‌ସ୍ ସାହେବ ବାଲେଶ୍ୱରରେ ଥିଲାବେଳେ ପ୍ରଜାଙ୍କର ମଙ୍ଗଳକାଂକ୍ଷୀ ବୋଲି ବୋଲି ରାଷ୍ଟ୍ର ହୋଇଥିଲା । ସେହି ହେତରୁ ପ୍ରଜାମାନଙ୍କର ପ୍ରକୃତ ଦୁଃଖ ଥାଉ ବା ନ ଥାଉ ସେମାନେ ଉତ୍ସାହିତ ହୋଇ ରାଜାଙ୍କ ବିରୁଦ୍ଧରେ ଗୁହାରି କରୁଅଛନ୍ତି ମାତ୍ର ଏ କାରଣ ସମ୍ଭବ ନୁହଇ ଯେହେତୁ ଗଡ଼ଜାତର ପ୍ରଜାମାନେ ଏ ସବୁ ସମାଚାର ପାଇଥିବାର ଅନୁମାନ ହୋଇ ନ ପାରେ ଏବଂ ଶ୍ରୀଯୁକ୍ତ ରେବନସା ସାହେବଙ୍କ ସମୟରେ ମଧ୍ୟ ସେମାନେ ଅନେକ ଥର ଆପଣା ୨ ଦୁଃଖ ଜଣାଇ ପ୍ରତିକାର ଶେଷକୁ ତୁନିହୋଇ ରହିଥିଲେ । ଏଥିରୁ ବୋଧହୁଅଇ ଯେ ଅନେକ ସ୍ଥଳରେ ସେମାନଙ୍କର ପ୍ରକୃତ ଗୁହାରି କରିବାର ହେତୁ ଅଛି ବୋଲି ଏପରି କରୁଅଛନ୍ତି । ଶ୍ରୀଯୁକ୍ତ ରେଜନସା ସାହେବ ଗଡ଼ଜାତର ମଙ୍ଗଳାକାଂକ୍ଷୀ ଥିଲେ ଓ କେତେକ ମଙ୍ଗଳ ସାଧନ କରିଅଛନ୍ତି ଏଥିରେ ସନ୍ଦେହ ନାହିଁ । କେବଳ ତାହାଙ୍କର ବିଚାର ଏକ ପ୍ରକାର ଥିଲା । ସେ ରାଜାମାନଙ୍କୁ ଆପଣା ପୁତ୍ରବତ୍ ସ୍ନେହ କରୁଥିଲେ ଓ ତାହାଙ୍କର ସୌଭାଗ୍ୟ ସର୍ବଦା ଲୋଡୁଥିଲେ । ଏମନ୍ତ କି ରାଜାଙ୍କର କୌଣସି ବାଟେ ଯେମନ୍ତ କି ପଣେ ଅନର୍ଥକ ବ୍ୟୟ ନ ହୁଅଇ ଓ ସେମାନେ ସମସ୍ତେ ଧନବାନ ହୋଇ ଆପଣ ରାଜ୍ୟ ସ୍ୱାଧୀନ ରୂପେ ପାଳନ କରନ୍ତି ସର୍ବଦା ଏହି କଥା ସେ ମନାସୁ ଥିଲେ । ମାତ୍ର ଯେମନ୍ତ ବୃଦ୍ଧ ପିତା ଆପଣା ସନ୍ତାନକୁ ଅତ୍ୟନ୍ତ ସ୍ନେହକରେ ଓ କୌଣସି କଥାରେ ତାଡ଼ନା କରିବାକୁ ସୁଖପାଏ ନାହିଁ ସେହିପରି ସେ ରାଜାମାନଙ୍କ ସଙ୍ଗ ବ୍ୟବହାର କରୁଥିଲେ । ରାଜାଙ୍କର

କିଛି ଅନ୍ୟାୟ କାର୍ଯ୍ୟ ଶୁଣିଲେ ତହିଁପାଇଁ ତାହାଙ୍କୁ ତାଡ଼ନା ନ କରି ମିଷ୍ଟବାକ୍ୟ ଓ ସଦୁପଦେଶ ଦ୍ୱାରା ସେମାନଙ୍କୁ ସୁପଥରେ ଆଣିବାର ଚେଷ୍ଟା କରୁଥିଲେ । ଏଥକୁ ବର୍ତ୍ତମାନ ଗଡ଼ଜାତର ରାଜାମାନେ ପ୍ରାୟ ସମସ୍ତେ ତରୁଣ ବୟସ୍କ ସୁତରାଂ କେବେ ୨ ଏହାଙ୍କୁ ରକ୍ତଚକ୍ଷୁ ନ ଦେଖାଇଲେ କେବଳ ଉପଦେଶରେ ଶାସିତ ହେବା ଅନେକଙ୍କ ପକ୍ଷରେ ଏକପ୍ରକାର ଅସମ୍ଭବ ଥିଲା । ଏହି ଅପରିମିତ ବାତ୍ସଲ୍ୟ ସ୍ନେହର ବଶବର୍ତ୍ତୀ ହୋଇ ରାଜାଙ୍କ ବିରୁଦ୍ଧରେ କୌଣସି ପ୍ରଜା ଗୁହାରି କଲେ ସେ ତାହା ନ ଶୁଣି ରାଜାଙ୍କ ନିକଟରେ ଗୁହାରି କରିବାକୁ ଉକ୍ତ ପ୍ରଜାଙ୍କୁ ଆଜ୍ଞା ଦେଉଥିଲେ । ଏ ନ୍ୟାୟଟି ଯେ ମନ୍ଦ ଥିଲା । ତାହା ମାନ୍ୟବର ଇଡ଼େନ ସାହେବ କଟକ ଜିଲ୍ଲାର କଲେକ୍ଟରଥିବା ବେଳେ ଅତ୍ୟନ୍ତ କୌତୁକ ପ୍ରକାରରେ ବୁଝାଇ ଦେଇ ଯାଇଅଛନ୍ତି ଓ ଯେଉଁ ଉପଲକ୍ଷରେ ସେ ତାହା କହିଥିଲେ ସେହି ଘଟନା ପାଠକଙ୍କୁ କହିଦେଲେ ଆମ୍ଭମାନଙ୍କର ଭାବ ବୁଝାଯିବ । ଉକ୍ତ ଘଟଣା ଏହି ଯେ ତଳ ଗଡ଼ଜାତର କେତେକ ପ୍ରଜା ମିଶି ରାଜାଙ୍କ ବିରୁଦ୍ଧରେ ସେ ସମୟର କମିଶନରଙ୍କ ନିକଟରେ ଦରଖାସ୍ତ କଲେ । କମିଶ୍ନର ସାହେବ ପ୍ରଜାଙ୍କ କଥା କିଛି ନ ବୁଝି ସେ ଦରଖାସ୍ତ ଉପରେ ଏହି ଆଜ୍ଞା ଲେଖି କଲେକ୍ଟର ସାହେବଙ୍କ ନିକଟକୁ ପଠାଇ ଦେଲେ ଯେ ଦରଖାସ୍ତକାରୀଙ୍କୁ ସାହେବ ବୁଝାଇ ଦେବେ ଯେ ସେମାନେ ରାଜାଙ୍କ ନିକଟରେ ଦରଖାସ୍ତ କରି ଆପଣା ୨ ଗୁହାରି ସବୁ ନିକାଶ କରିନେବେ । ମାନ୍ୟବର ଇଡ଼େନ ସାହେବ ଏହାକୁ ଦେଖି କହିଲେ "ଏତ ବଡ଼ ବିଚିତ୍ର ଆଜ୍ଞା ଅଟଇ । ଛେଳିମାନେ ବାଘର ଅତ୍ୟାଚାର ସହି ନ ପାରି ହାକିମ ପାଖରେ ଗୁହାରି କଲେ ଯେ ବାଘ ଜ୍ୱାଳାରେ ଆମ୍ଭେମାନେ ରହିପାରିବୁ ନାହିଁ, ଆମ୍ଭକୁ ରକ୍ଷାକର, ତହୁଁ ହାକିମ ବାଘକୁ ଡକାଇ କହିଲେ ତୁ ପାଟି ମେଲାକର ଓ ଛେଳିମାନଙ୍କୁ ଧରି ଗୋଟିଏ ୨ କରି ତାହା ମୁହଁରେ ପକାଇ ଦେଲେ ।" ଏଥର ପାଠକମାନେ ଅନୁମାନ କରନ୍ତୁ ଯେ ପ୍ରଜାମାନେ ଗୁହାରି କଲେ ତାହାଙ୍କ କଥା ନ ବୁଝି ରାଜା ପାଖରେ ଗୁହାରି କରିବାକୁ ସେମାନଙ୍କୁ କହିଦେବା କେମନ୍ତ ବିଚିତ୍ର ନ୍ୟାୟ ଅଟଇ । ସୁଖର ବିଷୟ ଯେ ଶ୍ରୀଯୁକ୍ତ ବିମ୍‌ସ ସାହେବ ଏ ବିଚିତ୍ର ନ୍ୟାୟକୁ ଅବଲମ୍ବନ କରିନାହାନ୍ତି । ତାହାଙ୍କ ନିକଟରେ ପ୍ରଜାମାନେ ଦରଖାସ୍ତ ଦେଲେ ସେ ରାଜାଙ୍କଠାରୁ କୈଫିୟତ ତଲବ କରୁଅଛନ୍ତି ଏବଂ ତହିଁର ବିଚାର କରିବାକୁ ପ୍ରସ୍ତୁତ ଅଛନ୍ତି । ରାଜାମାନେ କୈଫିୟତ ତଲବ ହେବାର ଦେଖି ବ୍ୟସ୍ତ ହେଲେଣି । ସେମାନେ ଜାଣିଲେଣି ସେ ବୀମ୍‌ସ ସାହେବଙ୍କଠାରେ ନରମ ଗରମ ଦୁଇ କଥା ଅଛି ଓ ଦଶପଲ୍ଲା ରାଜାଙ୍କ ବିରୁଦ୍ଧରେ ଯେଉଁ ରିପୋର୍ଟ ହୋଇଥିଲା ସେଥିର ସମ୍ବାଦ ଶୁଣି ସେମାନେ ସ୍ପଷ୍ଟ ବୁଝି ଅଛନ୍ତି ଯେ ଏହାଙ୍କ ଅମଳରେ ଆଉ ପୂର୍ବକାଳର ଆଳସ୍ୟ ଓ ଅମନୋଯୋଗିତା ଚଳିବ ନାହିଁ ।

ଏଥର ଖେଳ କୌତୁକମାନ ଛାଡ଼ି ରାଜଧର୍ମମାନ ସୁଚାରୁ ରୂପେ ପାଳଣ କରିବାକୁ ହେବ । ଏଥି ମଧ୍ୟରେ ଆମ୍ଭେମାନେ ଶୁଣିଲୁଣି ଯେ କେହି ୨ ରାଜାଙ୍କର ଚରିତ୍ର ବ୍ୟବହାର ଅନେକ ସୁମାର୍ଗକୁ ଆସିଲାଣି ଓ ଅପର ରାଜାମାନେ ମଧ୍ୟ ସେହି ଚେଷ୍ଟାରେ ଅଛନ୍ତି । ନୀଳଗିରି ରାଜାଙ୍କ ବିରୁଦ୍ଧରେ ଅନେକ ପ୍ରଜା ଦରଖାସ୍ତ ଦେଇଥିଲେ ଓ ସେସବୁରେ ରାଜାଙ୍କୁ କୈଫୟତ ତଲବ ହୋଇ ବାଲେଶ୍ୱର ମୁକାମରେ ବିଚାର ହେବାର ଥିଲା । ଏଥିକୁ ଆମ୍ଭେମାନେ ଅବଗତ ହୋଇ ଅଛୁଁ ଯେ ରାଜା ସୁବିବେଚନା ପୂର୍ବକ ପ୍ରଜାମାନଙ୍କୁ ରାଜିକରି ନେବାରେ ଆଉ ମୋକଦ୍ଦମା ବୁଝିବାର ଦରକାର ହେଲା ନାହିଁ ଓ ଏମନ୍ତ ଭରସା ହୁଅଇ ଯେ ସେଠାରେ ରାଜା ପ୍ରଜାଙ୍କର ଅମେଳ ଆଉ ରହିବ ନାହିଁ । ଏହି ଅମେଳର କଥା ଆମ୍ଭେମାନେ କେତେ କାଳରୁ ଶୁଣି ଆସୁଅଛୁଁ । ପୂର୍ବ ହାକିମଙ୍କ ଅମଳଦାରୀ ଯାକ ଏହା ଚାଲି ଆସିଲା କହିଲେ ଅତ୍ୟୁକ୍ତି ହେବ ନାହିଁ କିନ୍ତୁ ଶ୍ରୀଯୁକ୍ତ ବିମ୍‌ସ ସାହେବ ଥରେ ମାମଲା ବୁଝିବାକୁ ପ୍ରସ୍ତୁତ ହେଲେ ବୋଲି ତାହା ପରେ ୨ ନିଷତ୍ତି ହୋଇଗଲା । ଆଉ ତାହାଙ୍କ ମାମଲା ବୁଝିବାକୁ ହେଲା ନାହିଁ । ଆମ୍ଭେମାନେ ଏ ସମସ୍ତ ଫଳ ଦେଖି ବଡ଼ ଆନନ୍ଦିତ ହୋଇଅଛୁଁ ଓ ଯେବେ ଏ ନ୍ୟାୟଟି ସୀମା ଲଘଂନ କରି କୌଣସି ଏକ ଆଡ଼କୁ ମାଡ଼ି ନ ଯାଏ ତେବେ ଗଡ଼ଜାତର ଅବସ୍ଥା ଅନେକ ଭଲ ହେବ ସନ୍ଦେହ ନାହିଁ ।

## ଉତ୍କଳ ଦୀପିକା

( ୧୨ ଶ ଭାଗ, ୨୧-୦୭-୧୮୭୭, ସଂଖ୍ୟା ୨୯ )

## ପୁରୀ ମନ୍ଦିରର ଶାସନ

ଗତ ଗୋବିନ୍ଦଦ୍ୱାଦଶୀ ସମୟରେ ପୁରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ମନ୍ଦିରରେ କେତେଗୁଡ଼ିଏ ଯାତ୍ରୀ ମରା ପଡ଼ିବାରୁ ଗବର୍ଣ୍ଣମେଣ୍ଟଙ୍କ ଆଦେଶ କ୍ରମେ ଶ୍ରୀଯୁକ୍ତ କମିଶ୍ନର ବୀମ୍‌ସ ସାହେବ ତହିଁର ଅନୁସନ୍ଧାନ କରିଥିଲେ । ଅନୁସନ୍ଧାନର ଫଳ କି ହୋଇଥିଲା ଅବଧି ପ୍ରକାଶ ପାଇନାହିଁ ମାତ୍ର ଗଭର୍ଣ୍ଣମେଣ୍ଟ ଇଣ୍ଡିୟା ପୁରୀର ରାଜାଙ୍କ ପ୍ରତି ଯେଉଁ ଆଜ୍ଞା ଦେଇଅଛନ୍ତି ତହିଁରୁ ଅନୁମାନ ହୁଅଇ ଯେ ମହାରାଜାଙ୍କର ତତ୍ତ୍ୱାବଧାନ ଦୋଷରୁ ଉକ୍ତ ଦୁର୍ଘଟନା ଘଟିଥିବାର ସ୍ଥିର ହୋଇଅଛି । ଏଥିପାଇଁ ଗଭର୍ଣ୍ଣମେଣ୍ଟ ଆଦେଶ କରିଅଛନ୍ତି କି ମହାରଜା ପୁରୀ ମନ୍ଦିର ମଧ୍ୟରେ ଯାତ୍ରୀଙ୍କ ପ୍ରବେଶ, ରକ୍ଷା ଓ ଦର୍ଶନ୍ କାର୍ଯ୍ୟମାନ ସୁଚାରୁରୂପେ ଚଳିବା ଓ ସମସ୍ତ ଦୁର୍ଘଟନାର ନିବାରଣର ବ୍ୟବସ୍ଥା ନିମିତ୍ତ ଗୋଟିଏ ହିନ୍ଦୁ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କର କମିଟୀ ନିଯୁକ୍ତ କରିବେ ଓ ତାହାଙ୍କ ପରାମର୍ଶରେ ଏ ବିଷୟର ନିୟମାବଳୀ ସ୍ଥିରକରି ଗବର୍ଣ୍ଣମେଣ୍ଟଙ୍କ ମଞ୍ଜୁରୀ କାରଣ ପଠାଇବେ । ସେ

ପର୍ଯ୍ୟନ୍ତ ଏ ନିୟମାବଳୀ ପ୍ରସ୍ତୁତି ଓ ଗବର୍ଣ୍ଣମେଣ୍ଟରେ ଅର୍ପିତ ନ ହେବ ସେ ପର୍ଯ୍ୟନ୍ତ ମହାରାଜାଙ୍କୁ ମହାରାଜା ପଦ ଓ ତହିଁର ସନନ୍ଦ କି ଯାହା ଗତ ଜାନୁଆରୀ ମାସରେ ଗବର୍ଣ୍ଣମେଣ୍ଟ ଦେଇଅଛନ୍ତି ତାହା ସ୍ଥଗିତ ରହିବ । ଏ ଆଜ୍ଞା ଅଳ୍ପଦିନ ହେଲା ତାହାଙ୍କ ନିକଟକୁ ଯାଇଅଛି ଓ ଏ ଅନୁସାରେ ଅବଧି କିଛି କାର୍ଯ୍ୟ ହୋଇନାହିଁ । ଯେପରି ବନ୍ଦୋବସ୍ତ ହେବ ତାହା ଏ ଉତ୍ତାରୁ ଜଣା ପଡ଼ିବ । ପୁରୀର ମହାରାଜା ଆଇନାନୁସାରେ ଶ୍ରୀଜଗନ୍ନାଥଙ୍କ ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ଅଟନ୍ତି ଓ ତାହାଙ୍କ ଉକ୍ତ କର୍ମରେ କେତେ ପ୍ରକାର ଶୈଥିଲ୍ୟ ଘଟିଯିବାର ମଧ୍ୟ ଅପ୍ରକାଶ ନାହିଁ । ଅତଏବ ଆମ୍ଭେମାନେ ବିବେଚନା କରୁଁ କି ଗବର୍ଣ୍ଣମେଣ୍ଟ ତାହାଙ୍କୁ ଯେଉଁ ଆଜ୍ଞା ଦେଇଅଛନ୍ତି ତାହା ଅଯୌକ୍ତିକ ନୁହଇ ଏବଂ ତହିଁରେ ଏହାଙ୍କର ଅଧିକାର ପ୍ରତି ମଧ୍ୟ ହସ୍ତକ୍ଷେପ ହୋଇନାହିଁ କାରଣ ଗବର୍ଣ୍ଣମେଣ୍ଟ ତାହାଙ୍କୁ ଏତିକି କହିଅଛନ୍ତି ଯେ ଏଡ଼େ ଗୁରୁତର ବ୍ୟାପାର ସେ କେବଳ ଆପଣା ବିବେଚନାରେ ନିର୍ବାହ କରିବାକୁ ସାହସ ନ କରି କେତେ ସମ୍ଭ୍ରାନ୍ତ ଲୋକଙ୍କୁ ଆପଣା ମନ୍ତ୍ରୀ ସ୍ୱରୂପ କମିଟୀ ନିଯୁକ୍ତ କରି ତାହାଙ୍କ ପରାମର୍ଶରେ ଓ ଆପେ ସ୍ଥିର କରିଥିବା ନିୟମାନୁସାରେ କର୍ମକାରକ ହେବେ । ଏପରି ହେଲେ ତାହାଙ୍କର ବର୍ତ୍ତମାନ ଯେ ଆଧି ଅଛି ତାହା ସ୍ଥିର ରହିଲା । କିନ୍ତୁ କେତେକ ଲୋକ ମନେ କରନ୍ତି ଯେ ଗୋବିନ୍ଦ ଦ୍ୱାଦଶୀ ସମୟରେ ଦୁର୍ଘଟନା ସକାଶେ ଏକା ପୁରୀର ମହାରାଜାଙ୍କୁ ଦାୟଗ୍ରସ୍ତ କରିବାର ଉଚିତ ହୋଇନାହିଁ । ସେଠାରେ ସରକାରୀ କର୍ମକାରକମାନେ ତ ଉପସ୍ଥିତ ଥିଲେ ସେମାନେ ଅଧିକା କି ବନ୍ଦୋବସ୍ତ କଲେ । ଏପର ଚକ୍ରତୀର୍ଥରେ ଯେ ମନୁଷ୍ୟ ମରା ପଡ଼ିବାର ଶୁଣାଯାଏ ତହିଁରେ ତ ମହାରାଜାଙ୍କର ଦୋଷ ବୋଲାଯାଇ ନ ପାରେ । ଏପର ଏହି କାଳରେ ଅଯୋଧ୍ୟା କାଶୀ ପ୍ରଭୃତି ତୀର୍ଥସ୍ଥାନମାନଙ୍କରେ ଭୟଙ୍କର ଦୁର୍ଘଟନା ହୋଇଥିଲା ଓ ପୁଲିସ ତାହାର ନିବାରଣ କରି ପାରିଲେ ନାହିଁ । ଏଥିରୁ ସହଜରେ ଅନୁମାନ ହୋଇପାରେ ଯେ ଅସାଧାରଣ ଭିଡ଼କୁ କାହାରି ଆୟତ୍ତ ନଥିବାର ଗବର୍ଣ୍ଣମେଣ୍ଟ ବିବେଚନା କରି ସରକାରୀ କର୍ମଚାରଙ୍କୁ ନିର୍ଦ୍ଦୋଷୀ କରିଅଛନ୍ତି ଅଥଚ ପୁରୀର ମହାରାଜାଙ୍କୁ ଏଥିପାଇଁ ଶାସନ କରିବାକୁ ପ୍ରବୃତ୍ତ ହେଲେ । ଏହା କେମନ୍ତ କରି ଘଟିଲା । ଏପରି ସଂଶୟ ମନରେ ଜାତ ହେବା ନିତାନ୍ତ ଅସଙ୍ଗତ ନୁହଇ ଓ ଏଥିପାଇଁ ଆମ୍ଭେମାନେ ଏକାନ୍ତ ଆଶା କରୁଁ ଯେ ଶ୍ରୀଯୁକ୍ତ କମିଶ୍ନର ସାହେବଙ୍କ ଅନୁସନ୍ଧାନ ଓ ତହିଁରେ ଗବର୍ଣ୍ଣମେଣ୍ଟଙ୍କ ମନ୍ତବ୍ୟ ସର୍ବସାଧାରଣଙ୍କ ଗୋଚରାର୍ଥେ ପ୍ରକାଶହେଉ ତାହା ହେଲେ କାହାରି କିଛି ଭ୍ରମ ରହିପାରିବ ନାହିଁ ।

# ଅତିରିକ୍ତ ଉତ୍କଳ ଦୀପିକା

( ୧୧ ଶ ଭାଗ, ୨୯-୦୯-୧୮୭୭, ସଂଖ୍ୟା ୩୯ )

## ପ୍ରେରିତ ପତ୍ର

ମହାଶୟ, ଆଜି ଆପଣଙ୍କ ପତ୍ରିକ ପାର୍ଶ୍ୱର ମୁଁ ଜଣେ ପ୍ରାର୍ଥୀ । ପ୍ରତି ଉତ୍କଳବାସୀର ଲାଭାଲାଭ ଜଡ଼ିତ ଗୋଟିଏ ବିଷୟରେ ମୋର କିଛି ବକ୍ତବ୍ୟ ଅଛି ଆପଣଙ୍କ ପତ୍ରଦ୍ୱାରା ମୁଁ ତାହା ବ୍ୟକ୍ତ କରିବି । ଆମ୍ଭମାନଙ୍କର ପ୍ରଧାନ ହାକିମ କମିଶନରସାହେବ ତାହା ଶୁଣିବେ, ସେଥିର ପ୍ରତିକାର କରିବେ ଏହି ଆଶାରେ ମୁଁ ଉକ୍ତ ବିଷୟଟି ଛପାଇବା ପାଇଁ ଆଜି ଏଡ଼େ ବ୍ୟସ୍ତ ହୋଇଅଛି । ସାନଲାଟ ଶୁଣିବେ ବୋଲି ଆଶା ବଳାନ୍ତି, ମାତ୍ର ସାନଲାଟଙ୍କର ଦେଶୀୟ ସମ୍ବାଦପତ୍ର ପ୍ରତି ଯେଉଁ ଭକ୍ତି, ସେଥିରେ ସେ ଯେ ଶୁଣିବେ ଏଥିରେ ମୋହର ସନ୍ଦେହ ଜନ୍ମୁଛି । ପୁଣି - ଏଠାରେ ଉତ୍କଳ ଅନୁବାଦକ ମହାଶୟ ସପ୍ତାହକୁ ସପ୍ତାହ ଅନୁବାଦକରି ପଠାନ୍ତି କି ନାହିଁ, ସେଥିରୁ ସୁଦ୍ଧା ଅଜ୍ଞାତ । ସୁତରାଂ ସେ ଆଶା ନାହିଁ । ଶୁଣୁଛି ବୀମ୍‌ସ ସାହେବ ଟିକିଏଟିକିଏ ଏବେ ଆପଣଙ୍କ ପତ୍ର ପଢ଼ନ୍ତି, ମଧ ସେ ପ୍ରଧାନ ଉତ୍କଳହିତୈଷୀ ବୋଲି ସପ୍ତାହକୁ ସପ୍ତାହ ପକ୍ଷ ବାଲେଶ୍ୱରରୁ ରଡ଼ି ଆସୁଛନ୍ତି; ଓଡ଼ିଶାର ପ୍ରତ୍ୟେକ ଗୃହ, ଶୁଣିବାରେ ତାଙ୍କର ଯଶଧ୍ୱନିକୁ ପ୍ରତିଧ୍ୱନିତ କରୁଛି । ମଧ ତାଙ୍କର ଶୁଣିଛ ବଡ଼ ଦୟାର୍ଦ୍ର ଚିତ୍ତ । ଲୋକଙ୍କ ମୋହବତ୍ ସେ ଏଡ଼ି ପାରନ୍ତି ନାହିଁ । ଏ ସବୁରୁ ସେ ନିଶ୍ଚେ ମୋ ଗୁହାରୀ ଶୁଣିବେ ବୋଲି ମୋହର ବଡ଼ ଆଶା ଜନ୍ମିଅଛି । ମୋ ଗୁହାରି ତାଙ୍କ କର୍ଣ୍ଣରେ ପଡ଼ିଲେ, ମୋ କାମନା ସଫଳ ହୋଇପାରେ ।

ତେବେ ଅଧିକ ମୁଖବନ୍ଧ ଅନାବଶ୍ୟକ । ମୂଳ ପ୍ରସ୍ତାବର ସୂଚନା ହେଉ । ମୂଳପ୍ରସ୍ତାବଟି ସାମାନ୍ୟ । ସେଥିପ୍ରତି ଅବଧାନ କରନ୍ତୁ ।

ବର୍ତ୍ତମାନ ଓଡ଼ିଶା ବିଦ୍ୟାଳୟ ସମୂହରେ ବାବୁ ନନ୍ଦକିଶୋର ଦାସ ଜଏଣ୍ଟ ଇନ୍ସେକ୍ଟର ଅଛନ୍ତି । ଜଣେ ଦେଶୀୟ ଲୋକ ଜଏଣ୍ଟ ଇନ୍‌ସେକ୍ଟର - ହେଲେ ଓଡ଼ିଶା ବିଦ୍ୟାଶିକ୍ଷାର ଓ ଓଡ଼ିୟା ଭାଷାର ବହୁ ମଙ୍ଗଳ ହେବ ବୋଲି ରାଭେନ୍‌ଶା ସାହେବ୍ ତାଙ୍କୁ ଡେପୁଟି କଲେକ୍ଟରରୁ ଆଣି ଏ କାର୍ଯ୍ୟରେ ନିଯୁକ୍ତ କରାଇଥିଲେ, ଉକ୍ତ ବାବୁ ମଧ ଆଶାନୁରୂପ କାର୍ଯ୍ୟ କରିଅଛନ୍ତି । ଓଡ଼ିଶାର ଶିକ୍ଷିତ ଲୋକେ ଯଥାସାଧ ଶିକ୍ଷାର ପୁରସ୍କାର ବାବୁଙ୍କଠାରୁ ପାଇଅଛନ୍ତି । ଓଡ଼ିଶା ବିଦ୍ୟାଳୟ ଓ ପାଠଶାଳାଚୟର ଶୀକ୍ଷାପ୍ରଣାଳୀ ଏହି ବାବୁଙ୍କ ଯତ୍ନରେ କ୍ରମଶଃ ଉନ୍ନତ ହେଉଅଛି । ତାଙ୍କ ଦ୍ୱାରା ବିଦ୍ୟାଳୟର ବୃତ୍ତିପରୀକ୍ଷା ନିଚୟର ଶୃଙ୍ଖଳା ସମ୍ୟକ ରୂପେ ସ୍ଥାପିତ ହୋଇଅଛି । ଉତ୍କଳ ପୁସ୍ତକମାନ ନିର୍ବାଚନକରି ଉତ୍ତମ

୨ ପୁସ୍ତକମାନଙ୍କୁ ବିଦ୍ୟାଳୟର ପାଠ୍ୟପୁସ୍ତକ ସ୍ୱରୂପ ନିର୍ଦ୍ଧାରିତ କରି ଉତ୍ତମ ଓଡ଼ିଆ ପୁସ୍ତକ ରଚନା ବିଷୟରେ ଯଥେଷ୍ଟ ଉତ୍ସାହ ଦେଇଅଛନ୍ତି । ଏହିପରି ଗୋଟିଏ ଗୋଟିଏ କରି ତାଙ୍କ କାର୍ଯ୍ୟ କଥା ଲେଖିବା ମୋ ପକ୍ଷରେ ବାହୁଲ୍ୟମାତ୍ରା ତାଙ୍କର ନିଯୁକ୍ତି ସ୍ଥୂଳରେ ରାଭେନ୍‌ଶା ସାହେବଙ୍କର ଓଡ଼ିଶାରେ ଗୋଟିଏ କୀର୍ତ୍ତି ବିଶେଷ । ଆଜିକି ଚାରି ପାଞ୍ଚ ଦିନ ହେଲା ଶୁଣିଲି, ଡେପୁଟୀ କିଲଟରୀ ଧାଡ଼ିରେ ତାଙ୍କର ୧୦୦ ଟଙ୍କା ବେତନ ବୃଦ୍ଧି ହେବାରୁ ତାଙ୍କୁ ୧୦୦ ଟଙ୍କା ଜଏଣ୍ଟ ଇନସ୍ପେକ୍ଟରୀ ଏଲାଉନ୍ ସ ସାନଲାଟସାହେବ ଦେବାକୁ ଅସମ୍ମତ । ସୁତରାଂ ଉକ୍ତ ବାବୁ ଆପଣା ଡେପୁଟୀ କିଲଟରୀ କର୍ମକୁ ପ୍ରତିଗମନ କରୁଅଛନ୍ତି । ମୋହୋହୀନବିବେଚନାରେ ନନ୍ଦକିଶୋର ବାବୁ ଯେପରି ଓଡ଼ିଶାର ଶୁଭନୁଧାୟୀ ହୋଇ କାର୍ଯ୍ୟ କରିଅଛନ୍ତି ଓ ବର୍ତ୍ତମାନ ପ୍ରସ୍ତାବ ଅନୁସାରେ ଛୋଟନାଗପୁର, ଚଟ୍ଟଗ୍ରାମ, ଓଡ଼ିଶାରେ ୪୦୦ ଟଙ୍କା ବେତନରେ ଜଣେ ୨ ଜଏଣ୍ଟ ବା ଆଶିଷ୍ଟାଣ୍ଟ ଇନ୍‌ସ୍ପେକ୍ଟର ରଖିବାର ଯେପରି କଥା ହୋଇଅଛି, ଏହି ଉଭୟ ବିଷୟକୁ ବିଚାର କରି ନିତାନ୍ତପକ୍ଷେ ନନ୍ଦକିଶୋର ବାବୁଙ୍କର ଡେପୁଟୀ କିଲଟାରୀ ଧାଡ଼ିରେ ୪୦୦ ଟଙ୍କା ହେବା ପର୍ଯ୍ୟନ୍ତ ତାଙ୍କୁ ୧୦୦ ଟଙ୍କାଏ ଲାଓଏନ୍ସ ଦେଇ ଓଡ଼ିଶା ଜଏଣ୍ଟ ଇନ୍‌ସ୍ପେକ୍ଟର କାର୍ଯ୍ୟରେ ରଖାଯାଉ । ମଧ ଏହିତା ପ୍ରତ୍ୟେକ ଓଡ଼ିଆବାସିର - ହୃଦୟର ପ୍ରାର୍ଥନା । ନନ୍ଦକିଶୋରବାବୁ ଓଡ଼ିଶାବାସୀ, ସୁତରାଂ ସେ ଓଡ଼ିଶାର ଶିକ୍ଷା ଓ ଓଡ଼ିୟା ଭାଷାର ପ୍ରକୃତ ଅଭାବବୁଝି, ସେଥିର ପ୍ରତିକାର କରୁଅଛନ୍ତି ଓ ଏ ଏଥିମଧରେ ତାଙ୍କର କୃତି କାର୍ଯ୍ୟତାର ବୀଜ ନିହିତ ରହିଅଛି ।

ଯଦି ଏହି ପ୍ରସ୍ତାବରେ ବିମ୍‌ସ୍‌ସାହେବ କୌଣସି କାରଣରୁ ଅସମ୍ମତ ହୁଅନ୍ତି ; ଯଦି ତାଙ୍କୁ ସେ ଜଏଣ୍ଟ ଇନ୍‌ସ୍ପେକ୍ଟରିରେ ଏ ଲାଓଏନ୍ସ ଦିଆଇ ରଖାଇବାକୁ ନ ଚାହାନ୍ତି ; ତେବେ ଜଣେ ଏ ଦେଶୀୟଲୋକ ତାଙ୍କ କର୍ମରେ ନିଯୁକ୍ତ କରିବା ବିଷୟରେ ଯେମନ୍ତ ସେ ଯତ୍ନର ତ୍ରୁଟି ନ କରନ୍ତି, ଏହିତା ତାଙ୍କୁ ସବିନୟ ପ୍ରାର୍ଥନା । ଓଡ଼ିଶାବାସୀ ଏ ବଙ୍ଗଦେଶୀୟ କୌଣସି ଶିକ୍ଷା ବିଭାଗୀୟ କର୍ମଚାରୀଙ୍କୁ ଏ କାର୍ଯ୍ୟରେ ଦେଖିବାକୁ ଚାହାନ୍ତି ନାହିଁ । ବଙ୍ଗୀୟଙ୍କର ଓଡ଼ିଶାର ଶିକ୍ଷାରେ ସହାନୁଭୂତି ଜନ୍ମିବା କଥାରେ ଓଡ଼ିଶାବାସୀଙ୍କର ବିଶେଷ ସନ୍ଦେହ ଅଛି । ମଧ ଏ ସନ୍ଦେହ ଅହେତୁମୂଳରେ ନୁହେଁ ।

ଯାହା ହେଉ. ଜଣେ ଦେଶୀୟଙ୍କ ନାମ ଏଠାରେ ଉଲ୍ଲିଖିତ ହୋଇପାରେ । ତାଙ୍କୁ ଉକ୍ତ କର୍ମଦେଲେ ଓଡ଼ିଶାବାସୀଏ ଅସନ୍ତୁଷ୍ଟ ହେବେ ନାହିଁ, ସେ ବ୍ୟକ୍ତି ବାଲେଶ୍ୱରର ଡେପୁଟୀ ଇନ୍‌ସ୍ପେକ୍ଟର ରାଧାନାଥ ବାବୁ । ତାଙ୍କୁ ଏ କାର୍ଯ୍ୟରେ ନିଯୁକ୍ତ କଲେ ମଧ ଓଡ଼ିଶା ଶିକ୍ଷାବିଭାଗର ମଙ୍ଗଳର ସମ୍ୟକ୍ ସମ୍ଭାବିନା । ସେ ପ୍ରକୃତ ବିଏ, ଏମେଙ୍କଠାରୁ

ଉପଯୁକ୍ତତର । ଅନେକ ଶିକ୍ଷା ବିଭାଗୀୟ ୨/୩ ଶତଙ୍କା ବେତନ ପାଇବା ଲୋକଙ୍କ ଅପେକ୍ଷା ସୁଦକ୍ଷତର କର୍ମଚାରୀ ଓ ଅଧିକ ପାଣ୍ଡିତ୍ୟଧାରୀ । ରେଭେନ୍‌ସା ସାହେବ ସେଦିନ ଡେପୁଟୀ ଇନ୍‌ସ୍ପେକ୍ଟର ଧାଡ଼ିରେ ତାଙ୍କୁ ପଦୋନ୍ନତି ନ ଦେଇ ତାଙ୍କ ପ୍ରତି ବିଶେଷ ଅନ୍ୟାୟ କରିଅଛନ୍ତି ; ଏହା ବୋଧହୁଏ ସ୍ୱୟଂ ବୀମ୍‌ସ୍ ସାହେବଙ୍କୁ ସୁଦ୍ଧା ଅଗୋଚର ନାହିଁ ।

ଶ୍ରୀଯୁକ୍ତ ବୀମ୍‌ସ୍ ସାହେବ ଉଲ୍ଲିଖିତ ଗୁହାରୀଦ୍ୱୟ କର୍ଣ୍ଣଡ଼େରି ଶୁଣି, ସେଥିମଧ୍ୟରୁ ଗୋଟିକୁ ସଫଳକଲେ, ପ୍ରକୃତ ତାଙ୍କର ନାମର ଗୌରବ ଓଡ଼ିଶା ଶିକ୍ଷା ସମ୍ବନ୍ଧରେ ପରିବର୍ତ୍ତିତ ହେବ । ଏହିଥିରୁ ମଧ୍ୟ ଜଣାଯିବ ଶ୍ରୀଯୁକ୍ତ ବୀମ୍‌ସ୍ ସାହେବଙ୍କର ଓଡ଼ିଶା ପ୍ରତି କେଦେଦୂର ମମତା !!! 'କିମଧିକଂ ବିଜ୍ଞବରେଷୁ' ।

ସମ୍ପାଦକ ମହାଶୟ ! ଆଜି ଏତିକି । ଓଡ଼ିଶା ଜଏଣ୍ଟ ଇନ୍‌ସ୍ପେକଟରୀ କାର୍ଯ୍ୟ ଜଣେ ଓଡ଼ିଶାବାସୀ ନ ପାଇଲେ ଓଡ଼ିଆ ଶିକ୍ଷାବିଭାଗର ବିଶେଷ ମଙ୍ଗଳ ନାହିଁ । ଏଥିରେ ଆପଣଙ୍କ ମତ ଅବଶ୍ୟ ପ୍ରକାଶିତ ହେବ ।

ନିବେଦକ
**ଠିକ୍‌ଠାକ**

## ଉତ୍କଳ ଦୀପିକା

( ୧୨ ଶ ଭାଗ, ୨୪-୧୧-୧୮୭୭, ସଂଖ୍ୟା ୪୬ )

ଆମ୍ଭେମାନେ ଅନେକ ଦିନରୁ ଉଡ଼ାଖବର ଶୁଣିଥିଲୁଁ ଯେ ଓଡ଼ିଶାର ଜଏଣ୍ଟ ଇନ୍‌ସ୍ପେଟ୍‌ରୀ ପଦ ସକାଶେ ଶ୍ରୀଯୁକ୍ତ ବୀମ୍‌ସ ସାହେବ ବାବୁ ରାଧାନାଥ ରାୟଙ୍କୁ ମନୋନୀତ କରି ଗବର୍ଣ୍ଣମେଣ୍ଟକୁ ରିପୋର୍ଟ କରିଥିଲେ । ଗତ ସପ୍ତାହର କଲିକତା ଗଜେଟ ଉକ୍ତ ଜନରବକୁ ସ୍ୱାର୍ଥ କଲା । ଆମ୍ଭେମାନେ ବାବୁ ରାଧାନାଥଙ୍କ ନିୟୋଗରେ ଆନନ୍ଦିତ ହୋଇଅଛୁଁ । ଓଡ଼ିଶାର ଡେପୁଟୀ ଇନ୍‌ସ୍ପେକ୍ଟରମାନଙ୍କ ମଧ୍ୟରେ ଏହାଙ୍କ ପ୍ରଶଂସା ଅଧିକ । ପ୍ରତିବର୍ଷର ବିଜ୍ଞାପନୀରୁ ତାହା ପ୍ରକାଶ ପାଉଅଛି । ଇଂରାଜୀ ଭାଷାରେ ଏମ୍.ଏ. ଅଥବା ବି.ଏ. ହୋଇ ନଥିଲେ ମଧ୍ୟ ଘରେ ବସି ଅନେକ ଶିକ୍ଷା କରିଅଛନ୍ତି ଏବଂ ଦେଶୀୟ ଭାଷାରେ ଏହାଙ୍କ ଯୋଗ୍ୟତାର ପରିଚୟ ଏହାଙ୍କ ପ୍ରକାଶିତ ପୁସ୍ତକମାନ ଦେଉଅଛି । କେହି ୨ ବୋଲନ୍ତି କି ଉମା ପ୍ରସାଦ ଦେଙ୍କ ପ୍ରତି ଅନ୍ୟାୟ ହୋଇଅଛି କାରଣ ସେ ଏହାଙ୍କଠାରୁ ଉଚ୍ଚ ଶ୍ରେଣୀରେ ଥିଲେ । ମାତ୍ର ଏ ଆପତ୍ତି ଯଥାର୍ଥ ନୁହଇ କାରଣ ଉମା

ପ୍ରସାଦଙ୍କ ପଦୋନ୍ନତି ଠିକ୍ ନ୍ୟାୟ ବିଚାରରେ ହୋଇଥିବା ପକ୍ଷେ ସନ୍ଦେହ ଅଛି ପୁଣି ସେ ଓଡ଼ିଶାର ଲୋକ ନୁହନ୍ତି । ଆମ୍ଭମାନଙ୍କ ମତରେ ବାବୁ ନନ୍ଦକିଶୋର ଦାସଙ୍କ ଉତ୍ତାରୁ ବାବୁ ରାଧାନାଥ ରାୟଙ୍କୁ ମନୋନୀତ କରିବାରେ ଶ୍ରୀଯୁକ୍ତ ବୀମ୍‌ସ ସାହେବ ଉତ୍ତମ କରିଅଛନ୍ତି ଏବଂ ଏଥିରେ ଓଡ଼ିଶାର ଲୋକମାନେ ସନ୍ତୁଷ୍ଟ ହେବାର ଜଣାଯାଏ ।

## ଉତ୍କଳ ଦୀପିକା

( ୧୩ ଶ ଭାଗ, ୦୫-୦୧-୧୮୭୮, ସଂଖ୍ୟା ୧ )

## ଅଭିନବ ସାମାଜିକ ବୈଠକ

ଇଉରୋପୀୟ ବିଶେଷରେ ରାଜପୁରୁଷ ଓ ଦେଶୀୟ ଲୋକେ ଏକତ୍ର ମିଶି ଆମୋଦପ୍ରମୋଦ କରିବାର ପ୍ରଥା ଗତବର୍ଷ ଦରବାର ଉପଲକ୍ଷରେ ଏ ପ୍ରଦେଶରେ ପ୍ରଥମେ ଦେଖାଗଲା । ଶ୍ରୀମତୀ ଇଂଲଣ୍ଡେଶ୍ୱରୀଙ୍କ ଭାରତେଶ୍ୱରୀ ପଦଗ୍ରହଣର ଗୋଟିଏ ସାକ୍ଷାତ୍ ସୁଫଳ ସ୍ୱରୂପ ଆମ୍ଭେମାନେ ଉକ୍ତ ଘଟନାକୁ ମନେକରିଥିଲୁଁ । ତହିଁ ଉତ୍ତାରୁ ଶ୍ରୀଯୁକ୍ତ ବିଡ଼େନ ସାହେବ ଏ ଜିଲାକୁ ଆସି ଦୁଇଥର ଦେଶୀୟ ଲୋକଙ୍କୁ ଆପଣା କୋଠିକୁ ନିମନ୍ତ୍ରଣ କରି ଖେଳ ଇତ୍ୟାଦି ଆମୋଦ କରିବା ଦ୍ୱାରା ଇଂରାଜ ଲୋକଙ୍କର ଦେଶୀୟ ଲୋକଙ୍କ ସହିତ ଅଧିକତର ସଦ୍ଭାବ ସ୍ଥାପନର ପଦ ପରିଷ୍କାର କଲେ । କିନ୍ତୁ ତହିଁରେ ମଧ ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ତୃପ୍ତି ଲାଭ ହୋଇ ନଥିଲା ଓ ଆମ୍ଭେମାନେ ଦେଶୀୟ ଲୋକଙ୍କ ଘରେ ଇଂରେଜମାନଙ୍କର ଆମନ୍ତ୍ରଣ ସ୍ୱୀକାର କରିବାର କଥା ଦେଖିବାକୁ ବଡ଼ ଆଶା କରିଥିଲୁଁ । ଏପରି ଘଟଣା କଟକରେ ଅବଧି ହୋଇ ନଥିଲା । କେବଳ ବହୁତ ଦିନ ତଳେ ଥରେ ବାବୁ ବୈଦନାଥ ପଣ୍ଡିତଙ୍କ ଘରଠାରୁ ସରକସ ଦେଖିବା ସକାଶେ ଇଂରାଜମାନେ ଆସିଥିଲେ ମାତ୍ର ସମ୍ପୂର୍ଣ୍ଣରୂପେ ମିଶାମିଶି ହୋଇ ନଥିଲା । ଏହିବର୍ଷ ବାଲେଶ୍ୱରରେ ଶ୍ରୀଯୁକ୍ତ ବୀମ୍‌ସ ସାହେବ ଦୁଇ ତିନି ଜଣ ଦେଶୀୟ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ ଘରକୁ ଯାଇଥିଲେ ମାତ୍ର ତହିଁର ଉଦ୍ଦେଶ୍ୟ ଭିନ୍ନ ଥିଲା । ଶ୍ରୀଯୁକ୍ତ ବାବୁ ଜଗମୋହନ ରାୟଙ୍କ ଘରଠାରେ ଗତ ତା ୨ ରିଖ ରାତ୍ରରେ ଯେଉଁ ବୈଠକ ହୋଇଥିଲା ତାହାକୁ ପ୍ରକୃତ ପ୍ରଥମ ସାମାଜିକ ବୈଠକ ବୋଲିବାକୁ ହେବ । ଯେଉଁମାନେ ତାହା ଦେଖିଅଛନ୍ତି ସେମାନେ ଏକ ବାକ୍ୟରେ କହୁଅଛନ୍ତି କି କଟକରେ ଏହା ନୂତନ ଅଟଇ । ବାବୁ ଜଗମୋହନ ରାୟ ଏ ନଗରର ସମ୍ଭ୍ରାନ୍ତ ଇଂରାଜଙ୍କୁ ଆମନ୍ତ୍ରଣ କରିଥିଲେ, ଏମାନଙ୍କର ସଂଖ୍ୟା ପ୍ରାୟ

୩୫ ଜଣ ହେବ । ଏହି ପରିମାଣରେ ଦେଶୀୟ ଭଦ୍ର ଲୋକଙ୍କୁ ମଧ୍ଯ ସେ ଆମନ୍ତ୍ରଣ କରିଥିଲେ । ବୈଠକର ଶୃଙ୍ଖଳା ପ୍ରାୟ ପୂର୍ବଦିନ ପରିଥିଲା । ତେବେ ରୋଷନାଇର ଆଡ଼ମ୍ବର ବିସ୍ତର ହୋଇଥିଲା ଓ ଯେମନ୍ତ ସୁରୁଚିପୂର୍ବକ ଘର ଓ ଅଗଣା ଝାଡ଼ ଲଣ୍ଠନ ଲଟକନ ଫୁଲ ଇତ୍ୟାଦିରେ ସୁସଜ୍ଜିତ ହୋଇଥିଲା ତହିଁ ସଙ୍ଗେ ତୁଳନା ଦେବାକୁ ଗତ ଦରବାର ଘର ଛଡ଼ା ଆଉ କିଛି ଦେଖିବାକୁ ନାହୁଁ । ଫଳତଃ ଏମନ୍ତ ସୁନ୍ଦର ମଜଲିସ୍ ଆମ୍ଭେମାନେ କେବେ ଏଠାରେ ଦେଖିନାହୁଁ । ବାବୁଙ୍କର ଦୋମହଲା ବୈଠକ ଖାନାରେ ଜଳପାନର ସ୍ଥାନ ହୋଇଥିଲା ଓ ତଳର ବୈଠକଖାନା ଓ ଅଗଣାରେ ଖେଳ ଇତ୍ୟାଦିର ସମସ୍ତ ସାମଗ୍ରୀ ପ୍ରସ୍ତୁତ ଥିଲା । ପ୍ରାୟ ଆମନ୍ତ୍ରିତ ସମସ୍ତ ଉଚ୍ଚ ରାଜକର୍ମଚାରୀ ଓ ଅନ୍ୟାନ୍ୟ ଇଂରାଜମାନେ ଆସିଥିଲେ ଓ ଅତ୍ୟନ୍ତ ଆନନ୍ଦ ସହିତ ଖେଳିବା ନାଚ ଦେଖିବା ଓ ଇଚ୍ଛାମତେ ଜଳପାନ ଇତ୍ୟାଦି କରିବାରେ ମଗ୍ନ ହୋଇଥିଲେ । ଦେଶୀୟ ଓ ଇଂରାଜମାନେ ଯାହା ସଙ୍ଗେ ଯାହାର ଭାବ ମିଶାମିଶି ହୋଇ ଆମୋଦ କରିବାରେ ରତ ହେଲେ । ସମସ୍ତ ମଜଲିସ ଏକ ଭାତୃଭାବର ପ୍ରତିମୂର୍ତ୍ତି ହୋଇଥିଲା । ସାହେବମାନେ ସିତାର ଓ ବେହେଲା ବାଦ୍ୟ ଶୁଣି ଓ ଗୋଟିପୋ ଓ ବାଇଙ୍କର ନାଚ ଦେଖି ବଡ଼ ଆନନ୍ଦିତ ହୋଇଥିଲେ । ସବୁ ବ୍ୟାପାର ଲେଖିବାକୁ ସ୍ଥାନ ନାହିଁ । ମୋଟରେ ଏହି କଥା ବୋଲିବ । ଯଥେଷ୍ଟ ଯେ ଇଂରାଜମାନେ ସ୍ୱଜାତୀୟ ଘରକୁ ଯାଇ ଯେମନ୍ତ ନିଷ୍କପଟ ଭାବରେ ଆମୋଦ କରନ୍ତି ଏଠାରେ ଠିକ୍ ସେହିପ୍ରାୟ କରିଥିଲେ । ଜାତି ଦେଶ କି ବର୍ଣ୍ଣର କିଛି ମାତ୍ର ପ୍ରଭେଦ ମନେ କରିବାର କୌଣସି ଚିହ୍ନ ଦେଖା ଯାଇ ନଥିଲା ।

**ସୌଜନ୍ୟ :ସମ୍ବାଦପତ୍ରରୁ ଓଡ଼ିଶାର କଥା**

**ସଂକଳନ ଓ ସମ୍ପାଦନା : ଶ୍ରୀ ସୁଧାକର ପଟ୍ଟନାୟକ**

**ପ୍ରଥମ ଖଣ୍ଡ (୧୮୫୬-୧୮୮୧), ପ୍ରଥମ ମୁଦ୍ରଣ, ମେ, ୧୯୭୨**



# ଆତ୍ମଜୀବନ ଚରିତରେ ଜନ୍ ବୀମ୍ସ

ଉପସ୍ଥାପନା : ଶ୍ରୀ ଅର୍ଜୁନ ଜେନା

**ବାଲେଶ୍ୱରର ମିସନ ସ୍କୁଲ୍‌ରେ କର୍ମ :**

ବାଲେଶ୍ୱର ଜିଲ୍ଲାର କଲେକ୍ଟର ଜନ୍ ବୀମ୍ସ ଜଣେ ଅସାଧାରଣ ପଣ୍ଡିତ ବୋଲି, ତତ୍କାଳିକ ସିଭିଲିଆନ୍ ମଣ୍ଡଳୀ ଏବଂ ଦେଶୀୟ ଶିକ୍ଷିତ ସମାଜରେ ବିଶେଷ ରୂପେ ଖ୍ୟାତିଲାଭ କରିଥିଲେ । ଏଗାରଟା ଭାଷାରେ ତାଙ୍କର ପାରଦର୍ଶିତା ଥିଲା । ସେହି ସମୟରେ ସେ ତାଙ୍କର ଆର୍ଯ୍ୟଭାଷା ସମ୍ବନ୍ଧୀୟ ବ୍ୟାକରଣ (Comparative Grammar of the Indian Languages) ଲେଖିବାରେ ନିଯୁକ୍ତ ଥାଆନ୍ତି । ବୀମ୍ସ ସାହେବଙ୍କ ପଞ୍ଚଭାଷିକ ବ୍ୟାକରଣ ଲେଖିବା ସମୟରେ ସଂସ୍କୃତ, ବଙ୍ଗଳା ଓ ଓଡ଼ିଆ ଏହି ତିନି ଭାଷାରେ ଜ୍ଞାନଥିବା ଜଣେ ପଣ୍ଡିତ ଆବଶ୍ୟକ ହେଲା । ମୋର ପରମହିତୈଷୀ ହାଲମ୍ ସାହେବ ମୋତେ ସଂଗରେ ଘେନି ଯାଇ ବୀମ୍ସଙ୍କ ସହିତ ସାକ୍ଷାତ କରାଇଦେଲେ । ପ୍ରଥମ ସାକ୍ଷାତରେ ସେ ମୋତେ କେତେଗୁଡ଼ିଏ ବ୍ୟାକରଣ ସମ୍ବନ୍ଧୀୟ ପ୍ରଶ୍ନ ପଚାରିଲେ ଏବଂ ମୋର ଉତ୍ତରଗୁଡ଼ିକ ତାଙ୍କ ଇଚ୍ଛାନୁରୂପ ହେବାରୁ ସେ ସବୁ ତାଙ୍କ ବ୍ୟାକରଣରେ ଯୋଗକରି ଦେଲେ । ମୁଁ ସାହେବମାନଙ୍କ ମଧ୍ୟରେ ଜଣେ ପଣ୍ଡିତ ବୋଲି ପରିଚିତ ହୋଇପଡ଼ିଲି । "ନିରସ୍ତାପାଦପୋ ଦେଶେ ଏରଣ୍ଡୋଽପି ଦ୍ରୁମାୟତେ ।" ସପ୍ତାହରେ ଅନ୍ତତଃ ଥରେ ସାକ୍ଷାତ କରିବା ସକାଶେ ସାହେବ ମୋତେ ଆଦେଶ ଦେଲେ । କଦାଚିତ୍ ଦିନେ ବା ଦୁଇଦିନ ବିଳମ୍ବ ହୋଇଗଲେ, ସାକ୍ଷାତ ହେବା ମାତ୍ରେ ପଚାରନ୍ତି, "ବାବୁ, ମୋ ସହିତ ସାକ୍ଷାତ କରିବାକୁ କି ସକାଶେ ଏତେ ବିଳମ୍ବ କଲ ? " ସାକ୍ଷାତରେ ସାହେବଙ୍କ ସହିତ ସଚରାଚର ଭାଷାସମ୍ବନ୍ଧରେ ଚର୍ଚ୍ଚା ହୋଇଥାଏ । କେଉଁଦିନ ସଂସ୍କୃତ ଶ୍ଳୋକ, କେବେ ବା ବଙ୍ଗଳା ପଦ୍ୟ, ଓଡ଼ିଆ ରସ କଲ୍ଲୋଳ, ସାପ ମନ୍ତ୍ର, ଡାହାଣୀ ମନ୍ତ୍ର ଏହି ସମସ୍ତ ବିଷୟରେ କଥୋପକଥନ ହୋଇଥାଏ ।

ସେ ସମୟରେ ବାଲେଶ୍ୱରରେ ବଙ୍ଗାଳୀ ଏବଂ ଓଡ଼ିଆଙ୍କ ମଧ୍ୟରେ ବିବାଦ ଚଳୁଥିଲା । ସାହେବମାନେ ମୋର ସପକ୍ଷ ଥିବାରୁ ବଙ୍ଗାଳୀ ହାକିମ ଏବଂ ବଡ଼ କିରାଣି ଅମଲାମାନେ ମୋ ପାଖରେ ଶଙ୍କି ରହିଥାନ୍ତି । ସେ ସମୟରେ ବାଲେଶ୍ୱରରେ ନିମ୍ନଶ୍ରେଣୀର ହାକିମ ଏବଂ ବଡ଼ ବଡ଼ ବେତନଭୋଗୀ କର୍ମଚାରୀ ପ୍ରାୟ ସମସ୍ତ ବଙ୍ଗାଳୀ ଥିଲେ ।

ବାଲେଶ୍ୱରରେ ସ୍ତ୍ରୀ ଶିକ୍ଷା-ପ୍ରଚାର ଏବଂ ଉତ୍କଳ-ଭାଷାର ରକ୍ଷା ଏବଂ ପୁଷ୍ଟି ସାଧନ ବିଷୟରେ ମୁଁ ବୀମ୍ସ୍ ସାହେବଙ୍କଠାରୁ ଯଥେଷ୍ଟ ସାହାଯ୍ୟ ପ୍ରାପ୍ତ ହୋଇଅଛି ।

ସାହେବ ମହୋଦୟ ମୋତେ ଅନେକ ଥର ଅନେକ ପ୍ରକାର ବିପଦରୁ ରକ୍ଷା କରିଛନ୍ତି । ମୋର ସାଂସାରିକ ସର୍ବପ୍ରକାର ଉନ୍ନତିର ଏକମାତ୍ର ମୂଳାଧାର ମହାତ୍ମା ଜନ୍ ବୀମ୍ସ । ମୋର ଜୀବନର ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ ତାଙ୍କର ନାମ ସ୍ମରଣ କରିବି । ମୁଁ ଜଣେ ଦେଶହିତୈଷୀ ପଣ୍ଡିତ ବୋଲି ସାହେବ ମହୋଦୟ ସମସ୍ତଙ୍କଠାରେ କହୁଥିଲେ ।

ବଙ୍ଗଳା ଦକ୍ଷିଣପଶ୍ଚିମ ବିଭାଗର ସ୍କୁଲ ଇନ୍‌ସ୍‌ପେକ୍ଟର ଆର୍.ଏଲ୍.ମାର୍ଟିନ୍ ସାହେବଙ୍କ ପ୍ରଧାନ କାର୍ଯ୍ୟସ୍ଥଳ ମେଦିନୀପୁରରେ ଥିଲା । ଓଡ଼ିଶାର ସ୍କୁଲ ସମୂହ ପରିଦର୍ଶନ କରିବା ନିମନ୍ତେ ସେ କଟକ ଆସିଥିଲେ । ସେହି ସମୟରେ କଟକ ନର୍ମାଲ ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦ ଶୂନ୍ୟଥିଲା - ମାସିକ ବେତନ ତିରିଶ ଟଙ୍କା । ମୁଁ ସେହି ପଦ ସକାଶେ ପ୍ରାର୍ଥୀ କି ନାହିଁ ; ସାହେବ ଚିଠିରେ ମୋତେ ପଚାରିଲେ । ସେହି ଚିଠି ତଳେ ଏହା ମଧ୍ୟ ଉଲ୍ଲେଖ ଥିଲା ଯେ, ମୋତେ ସେହି ପଦରେ ନିଯୁକ୍ତ କରାଗଲେ ମୋତେ ନିଶ୍ଚୟ କଟକ ଯିବାକୁ ହେବ ; ଅର୍ଥାତ୍ ମୋତେ ନିଯୁକ୍ତ କରାଗଲା ଉତ୍ତାରେ ମୁଁ ସେହି ପଦ ଚାହେଁ ନାହିଁ ବୋଲି କହିପାରିବି ନାହିଁ । ହାଲମ୍ ସାହେବ ସେହି ସମୟରେ ବାଲେଶ୍ୱର ଇଲାକାରେ ଭ୍ରମଣ କରୁଥିଲେ । ତାଙ୍କ ସହିତ ଏ ବିଷୟରେ ପରାମର୍ଶ କରିବା ସକାଶେ ତିରିଶ ଟଙ୍କା କରି ଦେଇ କଟକ ଯିବା ସକାଶେ ନିଷେଧ କଲେ । ସୁତରାଂ ମୋର କଟକ ଯିବା ଯିବା ରହିତ ହେଲା ।

## ବାଲେଶ୍ୱରରେ ପ୍ରଥମ ଛାପାଖାନା (୧୮୬୮) :

ମିସନ୍ ସ୍କୁଲରେ ପଢ଼ାଉଥିବା ସମୟରେ ମୁଁ ଉତ୍କଳ ସାହିତ୍ୟର ଉନ୍ନତି ଏବଂ ବିସ୍ତାର ସକାଶେ କାୟମନୋବାକ୍ୟରେ ଚେଷ୍ଟା କରୁଥାଏ । ମୁଁ ପ୍ରଥମରେ 'ରାଜପୁତ୍ରର ଇତିହାସ' ନାମକ ଖଣ୍ଡିଏ ଗଦ୍ୟ-ପୁସ୍ତକ ଲେଖିଲି। ସେ ସମୟରେ ଉତ୍କଳରେ ଗୋଟିଏ ମାତ୍ର ପ୍ରେସଥିଲା - କଟକ ମିସନ୍ ପ୍ରେସ୍ ।

୧୮୬୮ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱରରେ ଗୋଟିଏ ଛାପାଖାନା ସ୍ଥାପନ କରିବା କଥା ସ୍ଥିର ହେଲା । ସେହି ଛାପାଖାନାର ନାମ ହେଲା ପି. ଏମ୍. ସେନାପତି ଏଣ୍ଡ କୋ - ଉତ୍କଳ ପ୍ରେସ୍ ।

ଛାପାକାର୍ଯ୍ୟ ଆରମ୍ଭ ହେବାର ଛ'ମାସ ଉତ୍ତାରେ ବିଗ୍‌ନୋଲାଡ୍ ଓ ପରବର୍ତ୍ତୀ କଲେକ୍ଟର ଜନ୍ ବୀମ୍ସ ସାହେବଙ୍କ ସହିତ ଉତ୍କଳର ପରମ ହିତୈଷୀ ଟି. ରେଭେନ୍‌ସା ସାହେବ ଦିନେ ପ୍ରାତଃ କାଳରେ ଛାପାଖାନାରେ ଉପସ୍ଥିତ ହେଲେ । ପ୍ରେସ୍‌ର ସମସ୍ତ ପଦାର୍ଥ ଦେଖିଲେ ପ୍ରେସ୍ ସ୍ଥାପନାର ସମସ୍ତ ବିବରଣ ଶୁଣି ଆମ୍ଭମାନଙ୍କୁ ଦଶଟଙ୍କା ପାରିତୋଷିକ ଦେଇଗଲେ ; ମାତ୍ର ଆମ୍ଭେମାନେ ସେହି ଟଙ୍କା ଆପଣା ସକାଶେ ନ

ନେଇ ସାହେବ ମହୋଦୟଙ୍କ ନାମରେ କୋମ୍ପାନୀରେ ଦୁଇଟି ସେୟାର ସ୍ୱରୂପ ଜମା କରିଦେଲୁ ? କୋମ୍ପାନୀ ଭଙ୍ଗିଗଲା ଉତ୍ତାରେ ଲାଭ ସହିତ ତାହାଙ୍କୁ ତିରିଶ ଟଙ୍କା ଫେରାଇ ଦେଇଥିଲୁ ।

## ନୀଳଗିରିରେ ଦେବାନୀ (୧୮୭୧-୧୮୭୫) :

ନୀଳଗିରି ଦେବାନୀ ପଦ ଶୂନ୍ୟ ହେଲା । ସନ ୧୮୭୧ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସରେ ବାଲେଶ୍ୱର ଜିଲ୍ଲାର କଲେକ୍ଟର ଜନ୍ ବୀମ୍ସ ସାହେବଙ୍କ ପ୍ରସ୍ତାବ ଅନୁସାରେ, ଗଡ଼ଜାତ ମାହାଲର ସୁପରିଟେଣ୍ଡେଣ୍ଟ୍ ମୋତେ ଶହେଟଙ୍କା ବେତନରେ ସେହି କାର୍ଯ୍ୟରେ ନିଯୁକ୍ତ କରି ପଠାଇଲେ ।

ମୁଁ ନୀଳଗିରି ଯିବା ପୂର୍ବରୁ ବାବୁ ସାହେବଙ୍କ ସହିତ ମୋର ବିଶେଷ ବନ୍ଧୁତା ଥିଲା ।

ମୁଁ ୧୮୭୫ର ଶେଷଭାଗରେ ସେଠାରୁ କାର୍ଯ୍ୟତ୍ୟାଗ କରି ଚାଲିଆସିଲି ।

## ଡୋମପଡ଼ାରେ ଦେବାନୀ (୧୮୬୬-୧୮୭୭) :

ନୀଳଗିରିରୁ ଚାଲିଆସି ଏକାବେଳେ ନିଃସ୍ୱ ହୋଇ ପଡ଼ିଛି । ଚିନ୍ତାକରି ଦେଖିଲି, ବାଲେଶ୍ୱରରେ ଉପାର୍ଜନର କୌଣସି ଉପାୟ ନାହିଁ । କଟକ ଚାଲିଯିବା ସକାଶେ ସ୍ଥିର କଲି । ସେ ସମୟରେ କଟକର କଲେକ୍ଟର ମହାତ୍ମା ଜନ୍ ବୀମ୍ସ ମୋର ପରମ ସହାୟ ଥିଲେ । ଉକ୍ତ ମହାତ୍ମା ମୋ ସକାଶେ କୌଣସି ଉପାୟ ବିଧାନ କରିଦେବେ, ମୋର ଦୃଢ଼ ବିଶ୍ୱାସ ଥିଲା ।

କଟକ ନାବାଳକ ଜମିଦାରୀ ମାହାଲର ଅଡ଼ିଟର ପଦ ଶୂନ୍ୟ ଥିଲା - ମାସିକ ବେତନ ୭୦ ଟଙ୍କା । ମହାତ୍ମା ଜନ୍ ବୀମ୍ସ ମୋତେ ସେହି ପଦରେ ନିଯୁକ୍ତ କରିବା ସକାଶେ ଆଦେଶ କଲେ ।

ଏଥକୁ ସତୁରି ଟଙ୍କାରେ ଚଳିବା ମୋ ପାଖରେ ଅସମ୍ଭବ । ସାହେବ ମହୋଦୟଙ୍କୁ ଏ ବିଷୟ ଜଣାଇବାରେ ସେ ମଧ୍ୟ ମୋ ପ୍ରସ୍ତାବକୁ ଯୁକ୍ତିଯୁକ୍ତ ବୋଲି ସ୍ୱୀକାର କଲେ । ମାସିକ ବେତନ ସତୁରି ଟଙ୍କା ସ୍ଥଳେ ଟ ୯୫ ଙ୍କା ଧାର୍ଯ୍ୟ କରିବା ପାଇଁ ବୋର୍ଡ଼କୁ ଲେଖିଲେ ।

ମୁଁ ଚିରକାଳ ଅପରିଣାମଦର୍ଶୀ, ଅର୍ଥବ୍ୟବହାର ବିଷୟରେ ସାବଧାନତା ମୋ କପାଳରେ ଲେଖା ନଥିଲା । ନିତାନ୍ତ ଅର୍ଥାଭାବ ଉପସ୍ଥିତ ହେଲା । ମୋର ଏକମାତ୍ର ଭରସା ଓ ଅବଲମ୍ବନ ସାହେବଙ୍କ ସହିତ ସାକ୍ଷାତ କଲି । ସାହେବଙ୍କ ସହିତ ମୋର କଥୋପକଥନ ହେଲା ।

ସାହେବ : ସେହି କଥା ତ ଆମ୍ଭେ ଭାବୁଛୁଁ, ଆପଣ କାହ୍ୟକେ ବୋର୍ଡ଼ଚିଠିକୁ ଅନାଇ, ଅନର୍ଥକ ବସି ରହିବେ ।

ମୁଁ : ହଁ ହଜୁର, ଅନର୍ଥକ ବସି ରହିବାକୁ ମୁଁ କଷ୍ଟକର ବୋଧ କରୁଛି ।

ସାହେବ : ଠିକ୍ ସତକଥା । ସବୁ ବେମାରିଠାରୁ ନିଷ୍କର୍ମା ହୋଇ ବସିରହିବା ବଡ଼ କଷ୍ଟକର । (କିଛିକ୍ଷଣ ଚିନ୍ତାକରି) ଆଚ୍ଛା, ଆପାତତଃ ଆପଣଙ୍କୁ ଡୋମପଡ଼ାର ଦେବାନୀ ପଦରେ ନିଯୁକ୍ତି କରିବାକୁ ଇଚ୍ଛାକରୁଁ । ଆପଣ ଯିବାକୁ ସମ୍ମତ ଅଛନ୍ତି କି ?

ମୁଁ : (ମନ ମଧ୍ୟରେ ହସିଲି । ମୋର ପୁଣି ଗୋଟାଏ ସମ୍ମତି । ପ୍ରାର୍ଥନା ପୂର୍ବରୁ ଯେ ବରପ୍ରାପ୍ତି । 'ବାୟାରେ ଭାତ ଖାଇବୁ ? ହାତେ ଧୋଇବି କେଉଁଠି ? ତତ୍‌କ୍ଷଣାତ୍ କହିଲି-) ହଁ ହଜୁର, ଯେଉଁଠାକୁ ପଠାଇବେ, ଯିବାକୁ ସମ୍ମତ ଅଛି ।

ସାହେବ - ତେବେ ଯାଆନ୍ତୁ, ଆପାତତଃ ସେଠାରେ ତିନିମାସ ତୁନି ହୋଇ ବସିବେ, କିଛି କାମ କରିବେ ନାହିଁ - କରିବି ପାରିବେ ନାହିଁ । ପାଞ୍ଚ ବର୍ଷ ହେଲା ରାଜା-ପ୍ରଜାଙ୍କ ମଧ୍ୟରେ ଭୟଙ୍କର ଗୋଲମାଳ ଚାଲିଅଛି । ନାନାପ୍ରକାର ମାମଲାର ଖବର ଆସୁଅଛି । ଆପଣ ଦୃଷ୍ଟି ରଖିବେ, ଗୋଳଯୋଗ ଯେମନ୍ତେ ବେଶି ବଢ଼ି ନ ପଡ଼େ । ଆପାତତଃ ଆପଣଙ୍କର ଏତିକିମାତ୍ର କର୍ତ୍ତବ୍ୟ । ଗବର୍ଣ୍ଣମେଣ୍ଟରୁ ତମ୍ଭି ଚିଠି ଆସିଅଛି, ଯେପରି ହେଉ, ଏହି ବର୍ଷ ମଧ୍ୟରେ ଗୋଳଯୋଗ ନିଷ୍ପତ୍ତି କରିବାକୁ ହେବ । ଆଉଗୋଟାଏ କଥା – ରାଜାଟା ବାୟା କୋଜାଣି ଆପଣଙ୍କୁ ଦରମା ଦେବାକୁ ହରକତ୍‌କରିବ । କାଲି କଚେରିରୁ ଚିଠି ଲେଖି, ରାଜା ନିକଟରୁ ଅଗ୍ରିମ ତିନିମାସର ଦରମା ଅଣାଇ ଦେବି । ସେ ଟଙ୍କା ପାଇଲେ ଡୋମପଡ଼ା ରମାନା ହେବେ । ଜଗମୋହନ ବାବୁଙ୍କୁ କହିଦେବୁଁ । ସେ ରାଜାଙ୍କଠାରୁ ଶୀଘ୍ର ଟଙ୍କା ଅଣାଇ ଆପଣଙ୍କୁ ଦେବେ ।( ସେ ସମୟରେ ବାବୁ ଜଗମୋହନ ରାୟ କଟକ ଜିଲ୍ଲାର ପ୍ରଧାନ ଡେପୁଟି କଲେକ୍ଟର ଥିଲେ ) ।

୧୮୭୬ ଖ୍ରୀ : ଅ: ଜୁଲାଇ କି ଅଗଷ୍ଟ ମାସରେ ମୁଁ ଡୋମପଡ଼ା ଯାତ୍ରା କଲି । ରାଜାସାହେବ ମୋର ତିନିମାସର ଦରମା ଅଗ୍ରୀମ ଦାଖଲ କରିଥିଲେ । ମୁଁ ଜଗମୋହନବାବୁଙ୍କ ଠାରୁ ଟଙ୍କା ଗଣିନେଲି ।

ମୋ କାର୍ଯ୍ୟକ୍ଷେତ୍ର ବର୍ତ୍ତମାନ ସଂକଟସଂକୁଳ, କୌଣସି କାର୍ଯ୍ୟରେ ହାତଦେବାକୁ ଭରସା ପାଉନାହିଁ । ରାଜା ପ୍ରଜା ଦୁଇପକ୍ଷଙ୍କର ମୋ' ପ୍ରତି ଅବିଶ୍ୱାସ । ଏଣେ କଲେକ୍ଟର ସାହେବଙ୍କର ଆଦେଶ ।

ଡିସେମ୍ବର ମାସ ଶେଷ ଆଡ଼କୁ ସାହେବ ମହୋଦୟ କଟକରୁ ଡୋମପଡ଼ା ଗସ୍ତକୁ ବାହାରିଲେ । ପ୍ରଥମେ ଡେରା ପଡ଼ିଲା କଟକ ଡୋମପଡ଼ା ଦୋସୀମାନେ ବାଆଁରା

ନାମକ ମୌଜାରେ । ସାହେବଙ୍କ ସଙ୍ଗରେ ଥିଲେ, କୋଡ଼ିଏ ଜଣ କନ୍‌ଷ୍ଟେବଲ ସହିତ ପୁଲିସ୍ ସୁପରିଣ୍ଟେଣ୍ଡେଣ୍ଟ, ଜଣେ ଏସିଷ୍ଟେଣ୍ଟ ମାଜିଷ୍ଟ୍ରେଟ, ପେସ୍କାର, ମୁନ୍‌ସି, ଅମଲା - ଏରୂପେ ପ୍ରାୟ ଶତାଧିକ ଲୋକ । ପୂର୍ବରୁ ପରବାନା ପାଇ ମୁଁ ସମସ୍ତ ବିଷୟ ଠିକ୍ କରି ରଖିଥିଲି । ''ଧନ କାର୍ପଣ୍ୟ ସେବାବଳେ, କିବା ଅସାଧ୍ୟ ମହୀତଳେ ।''

ବର୍ତ୍ତମାନ ହଜୁର କେବଳ ମାଣପ୍ରତି ଦୁଇପଇସା ମାତ୍ର ବୃଦ୍ଧି ଜମାରେ ବନ୍ଦୋବସ୍ତ କରିବାକୁ ହୁକୁମ୍ ଦେଲେ, ସମସ୍ତ ଗୋଳଯୋଗ ନିଷ୍ପତ୍ତି ହୋଇଯିବ ।

ସାହେବ ମହୋଦୟ ସ୍ଥିର ଭାବରେ ବସି ମୋହର ସମସ୍ତ କଥା ମନୋଯୋଗ ପୂର୍ବକ ଶୁଣିଲେ । ଶେଷରେ କହିଲେ, ''ବାବୁ, ବନ୍ଦୋବସ୍ତ ସମ୍ବନ୍ଧରେ ଯେଉଁ କଥା ସବୁ କହିଲେ, ସେ ସମସ୍ତ ଠିକ୍ କଥା । ଯେକୌଣସି ରୂପେ ହେଉ, ଏବର୍ଷ ଜମିଜମାର ବନ୍ଦୋବସ୍ତ କରାଯିବ ; ମାତ୍ର ଜମି ଜମା ବୃଦ୍ଧି ହେବ ନାହିଁ । ଆମ୍ଭେ ପ୍ରଜାମାନଙ୍କୁ ହୁକୁମ୍ ଦେଇ ସାରିଅଛି - ଜମା ବୃଦ୍ଧି ହେବ ନାହିଁ । ମହାତ୍ମା ଜନ୍ ବୀମ୍‌ସ ଜଣେ ଅସାଧାରଣ ବିଦ୍ୱାନ ପ୍ରଜାହିତୈଷୀ, ଉତ୍କଳର ଉନ୍ନତିକାମୀ, ଗରିବର ମା ବାପ, ମାତ୍ର ତାଙ୍କର ଗୋଟିଏ ଦୋଷ ଭଲ ହେଉ ବା ମନ୍ଦ ହେଉ ଯାହା ଥରେ ହୁକୁମ୍ ଦେବେ, ସେଥିରେ କୌଣସି ପ୍ରକାର ଅନ୍ୟଥା ହେବ ନାହିଁ। ମୁଁ ଆଉ ଅଧିକ କୌଣସି କଥା ନ ବଳାଇ ବିଦାୟ ଗ୍ରହଣ କରି ଚାଲି ଆସିଲି ।

ଭୋର ହେବା ମାତ୍ରେ ସେହି ସମସ୍ତ ମୌଜାକୁ ପାଇକ ପଠାଇ ପଧାନ ଓ ମୁଖଣ୍ଡ, ମୁଖଣ୍ଡ ପ୍ରଜାମାନଙ୍କୁ ଡକାଇ ଆଣିଲି । ସେମାନଙ୍କ ସଙ୍ଗେ ନିଷ୍ପତ୍ତି ହେଲା, ସେମାନେ ସାହେବଙ୍କୁ ଏତିକି କହିବେ - ''ହୁଜୁର, ଆମ ରାଜା -ପ୍ରଜାଙ୍କ ମଧ୍ୟରେ ଯେଉଁ ଗୋଳମାଳ ଲାଗିଅଛି, ହଜୁର ଯେଉଁ ଦେବାନଙ୍କୁ ପଠାଇଅଛନ୍ତି ତାଙ୍କୁ ଆମ୍ଭେମାନେ ମଧ୍ୟସ୍ଥ ମାନିଲୁ । ହଜୁର ହୁକୁମ କରନ୍ତୁ, ସେ ସମସ୍ତ ଗୋଳମାଳ ସଫା କରିଦେବେ ।''

ମୁଁ ସାହେବଙ୍କ ଡେରା ଭିତରକୁ ଯାଇ, ଜଣାଇଲି - ''ପ୍ରଜାମାନେ ମୋତେ ମଧ୍ୟସ୍ଥ ମାନୁଛନ୍ତି ; ସେମାନଙ୍କର ଇଚ୍ଛା ହଜୁର ମଞ୍ଜୁର ଦେଲେ ରାଜାପ୍ରଜାଙ୍କ ମଧ୍ୟରେ ଯେଉଁ ବିବାଦ ଚଳୁଅଛି, ତାହା ବୁଝି ନିଷ୍ପତ୍ତି କରିଦେବି '' । ସାହେବ ମୋ କଥା ଶୁଣି ଭାରି ଖୁସିଟାଏ ହୋଇ କହିଲେ, ''ବେଶ୍ କଥା, ବାବୁ ବେଶ୍ କଥା, ଆପଣ ଏହି କାର୍ଯ୍ୟ କରିଦେଲେ, ଆମ୍ଭେ ଅତ୍ୟନ୍ତ ଆନନ୍ଦିତ ହେବୁଁ । ଦୁଇ ବର୍ଷ ହେଲା ବାରମ୍ବାର ଏହି କଥା ଶୁଣିଶୁଣି ବିରକ୍ତ ହୋଇ ଯାଇଅଛୁ ।''

ବେଳ ପ୍ରାୟ ଚାରିଟା ଗଡ଼ି ଗଲାଣି, ହାକିମଙ୍କ ଡେରା ସମ୍ମୁଖରେ ଜଣେ ଚପରାସି ଖୁବ୍ ପାଟିଟାଏ କରି ଚପରାସି ଖୁବ୍ ପାଟିଟାଏ କରି ତୁହାଇତୁହାଇ ଡାକିବାକୁ

ଲାଗିଲା, ''ଡୋମପଡ଼ାକା ପଧାନ ଲୋକ, ପ୍ରଜା ଲୋକ, ହାଜର ହେ - '' ଡୋଟା ଆମ୍ବଗଛ ମୂଳରୁ ଗ୍ରାମ ଲୋକଙ୍କ ଓଳିତଳରୁ, ପିଣ୍ଡାରୁ, ଘର ଭିତରୁ ପଞ୍ଝାକୁ ପଞ୍ଝା ଲୋକ ବାହାରି ଆସିଲେ । ଥୋକେ ପହଞ୍ଚି ପାରି ନଥିଲେ । ପଡ଼ି ଉଠି ଧାଇଁଛନ୍ତି । ସାହେବଙ୍କ ଡେରା ସାକ୍ଷାତରେ ଧାଡ଼ିକୁ ଧାଡ଼ି ଛିଡ଼ା ହୋଇଗଲେ, ଲୋକ ପ୍ରାୟ ଦୁଇହଜାର ହେବେ । ମୁଁ ବ୍ୟାକୁଳ ଭାବରେ ଖୋଜି ବୁଲୁଅଛି - ମୋ' ଲୋକ କାହାନ୍ତି । ମୋ ପକ୍ଷରେ ବର୍ତ୍ତମାନ ଦିଙ୍ମଣ୍ଡଳ ଅନ୍ଧକାରମୟ ହୃଦୟ ଭିତରଟା ତଦ୍ରୂପ ତିମିରାଚ୍ଛନ୍ନ । କିଛି ଉପାୟ ସ୍ଥିର କରି ପାରୁନାହିଁ ।

ହାକିମ ମୁଣ୍ଡଠାରୁ ଗୋଡ଼ ପର୍ଯ୍ୟନ୍ତ ଗୋଟାଏ ବିଲାତୀ କମ୍ବଳ ଢାଙ୍କିହୋଇ ଭିତରୁ ବାହାରି ରାଇଟି ବାରଣ୍ଡାରେ ଛିଡ଼ା ହୋଇଗଲେ । ସାହେବଙ୍କର କେବଳ ଆଖି ଯୋଡ଼ିକ ଆଉ ମୁହଁଟି ଦିଶୁଥାଏ । ମୁଁ ଆଉ ପେସ୍କାର ସାହେବଙ୍କ ସାମନାରେ ଏକ ପାଖିଆ ଛିଡ଼ା ହୋଇଥାଉଁ । ହାକିମ ହିନ୍ଦିଭାଷାରେ କହିଲେ, ''କଥା ପ୍ରଜାମାନେ, ତୁମ୍ଭେମାନେ କହୁଛ ରାଜାଙ୍କ ସହିତ ତୁମ୍ଭମାନଙ୍କର ଯେଉଁ ବିବାଦ ଚଳୁଅଛି, ଦେବାନ ଫକୀର ମୋହନ ବାବୁ ମଧ୍ୟସ୍ଥ ହୋଇ ସେ ଗୋଳମାଳ ନିଷ୍ପତ୍ତି କରିଦେବେ ?'' ଚାରି ପାଞ୍ଚଜଣ ସରଦାର ପ୍ରଧାନ ଏକ ସଙ୍ଗରେ ପାଟିକରି କହିଲେ, ''ଦେବାନ ବାବୁ ଯଦି ଗୋଳମାଳ ନିଷ୍ପତ୍ତି କରିଦେବେ, ତେବେ ଆପଣ କି ସକାଶେ ଏତେ ବର୍ଷା ତୋଫାନରେ କଟକରୁ ଧାଇଁ ଅଇଲେ ? '' ସାହେବ ସେମାନଙ୍କ କଥା ବୁଝି ନ ପାରି ମୋତେ ଅନାଇ ପଚାରିଲେ, ''ଏମାନେ କ'ଣ କହୁଅଛନ୍ତି ?'' ମୁଁ ତତ୍‌କ୍ଷଣାତ୍ ଜବାବ ଦେଲି, ''ଏମାନେ କହୁଛନ୍ତି କି, ଦେବାନ ବାବୁ ଆମ୍ଭମାନଙ୍କ ମାମଲା ନିକାଶ କରିଦେବେ । ଆପଣ ଏ ବର୍ଷ ତୋଫାନରେ କଟକରୁ ଆସି କଷ୍ଟ ପାଉଛନ୍ତି କାହିଁକି ?''

ସାହେବ କହିଲେ '' ବହୁତ ଆଛା, ଦେବାନ ବାବୁ ସବୁକଥା ନିଷ୍ପତ୍ତି କରିଦେବେ । ସେ ଜଣେ ଯୋଗ୍ୟ ଲୋକ । ଆମ୍ଭେ ତାଙ୍କୁ ବିଶ୍ୱାସ କରୁ । ସଲାମ୍, ସଲାମ ପ୍ରଜାମାନେ, ବିଦାୟ, ବିଦାୟ'' । ଏତିକି କଥା କହି, ଚଞ୍ଚଳ ଡେରା ଭିତରକୁ ପଶିଯାଇ ପରଦା ପକାଇ ଦେଲେ । ପଧାନମାନେ ପରସ୍ପର ମୁହଁ ଚାହାଁଚାହିଁ ହେଉଥାନ୍ତି ।

ଏ କ'ଣ ହେଲା ? ହାକିମଟା କ'ଣ ବୁଝିଗଲା ? ଅମଲାମାନେ ମୋର ବନ୍ଧୁ, ଚପରାସିମାନେ ମୋର ଅନୁଗତ । ତତ୍‌କ୍ଷଣାତ୍ ସେମାନେ ପ୍ରଜାମାନଙ୍କୁ ରାଉଟି ପାଖରୁ ତଡ଼ି ଦେଲେ ।

ପରଦିନ ସକାଳୁ ରାଉଟିକୁ ଯାଇ ହାକିମଙ୍କ ସହିତ ସାକ୍ଷାତ କଲି । ଦେଖିଲି, ସାହେବ ନିତାନ୍ତ ବ୍ୟସ୍ତ । ଗତରାତିରେ ବୃଷ୍ଟିଜଳ ଡେରା ଭିତରେ ପଶି, ଜିନିଷ ପତ୍ର

ଗୁଡ଼ାକ ତିନ୍ତାଇ ଦେଇଅଛି । ସାହେବ ଆପେ ସେଗୁଡ଼ାକ ଟଣାଟଣି କରି, ଏ କୋଣ ସେ କୋଣରେ ସଜଡ଼ା ସଜଡ଼ି କରି ରଖୁଛନ୍ତି । ମୋତେ ଦେଖି, ତାଙ୍କର ଗତ ରାତିରେ ହଇରାଣ କଥାଗୁଡ଼ାକ କହିଲେ । ତହି ଉତ୍ତାରୁ ମୋ ସହିତ ନିମ୍ନଲିଖିତ କଥୋପକଥନ ହେଲା ।

ସାହେବ - ବାବୁ ଖବର କ'ଣ ?

ମୁଁ - ହଜୁର୍, ଗତ ପରଦିନ ଉପରଓଳି ଦୁଇ ହଜାର ପ୍ରଜା ହଜୁରଙ୍କ ସାକ୍ଷାତରେ ମୋତେ ମଧ୍ୟସ୍ଥ ମାନିଥିଲେ ; ତାହାତ ହଜୁର ଜାଣନ୍ତି ।

ସାହେବ - ହଁ, ହଁ ପ୍ରଜାମାନେ ତ ସେ କଥା ଆମ୍ଭ ସାକ୍ଷାତରେ କହି ଯାଇଛନ୍ତି, ପୁଣି କ'ଣ ହେଲା ?

ମୁଁ - ଗତକାଲି ଉପରଓଳି ପଧାନମାନେ ସମସ୍ତ ପ୍ରଜାଙ୍କୁ ଡକାଇ ଉପଦେଶ ଦେଇଅଛନ୍ତି, ସେଦିନର କଥା ଅମାନ୍ୟ କରି ପୁନର୍ବାର ଗୋଳଯୋଗ ଆରମ୍ଭ କରିବେ ।

ସାହେବ - କି ସକାଶେ ପ୍ରଜାମାନେ ମନ୍ଦଲୋକମାନଙ୍କ କଥାରେ ଚାଲୁଅଛନ୍ତି ?

ମୁଁ - ହଜୁର୍, ଗରିବ ପ୍ରଜାମାନେ ପ୍ରକୃତରେ ନିରୀହ ଲୋକ । ସମସ୍ତ ଉତ୍ପାତର ମୂଳ କାରଣ ପଧାନମାନେ । କୌଣସି ପ୍ରଜା ପଧାନମାନଙ୍କ କଥାରେ ନ ଚାଲିଥିଲେ, ତାହାର ସମ୍ପତ୍ତି ସବୁ ଲୁଟ୍ କରି ନେଇ ଘର ଭାଙ୍ଗି ପକାଉଅଛନ୍ତି, ଘରର ପ୍ରତ୍ୟେକ ଲୋକଙ୍କୁ ନିର୍ଦ୍ଦୟ ରୂପେ ପ୍ରହାର କରୁଅଛନ୍ତି ; ଏଥିପାଇଁ ସେମାନେ ପଧାନମାନଙ୍କର ଆଜ୍ଞାବହ ହୋଇ ରହିଛନ୍ତି ।

ସାହେବ - ଏପରି ଅତ୍ୟାଚାର କେଉଁ କେଉଁ ପ୍ରଜା ଉପରେ ହୋଇଅଛି ?

ମୁଁ - ପୂର୍ବେ ତ ଅନେକ ଲୋକଙ୍କ ଉପରେ ହୋଇ ଯାଇଅଛି । ଆପତତଃ ଚାରିଦିନ ପୂର୍ବେ ଗୋଟାଏ ଧୋବା ରାଜାଙ୍କ ନଅରର ପରିଜନମାନଙ୍କ ଲୁଗା କାଚିଥିଲା ବୋଲି, ତାହା ଘରର ସମ୍ପତ୍ତି ସବୁ ଲୁଟ୍-ତରାଜ କରିନେଇ ତାକୁ ନିର୍ଦ୍ଦୟରୂପେ ପ୍ରହାର କରିଅଛନ୍ତି ।

ସାହେବ - ଆଛା କେବଳ ଏହି ମାମଲାଟା ପ୍ରମାଣ କରନ୍ତୁ ।

ମୁଁ - ହଜୁର, ପଧାନମାନଙ୍କ ଭୟରେ କୌଣସି ପ୍ରଜା ସାର୍ଯ୍ୟ ଦେବେ ନାହିଁ ।

ସାହେବ - ଆଛା ଯାଆନ୍ତୁ, ଚେଷ୍ଟା କରନ୍ତୁ ।

ମୁଁ - ସାହେବଙ୍କ ଠାରୁ ବିଦାୟ ଗ୍ରହଣ କରି ଉଠି ଆସିଲି ।

ଦିନ ବାରଟା ସମୟରେ ମହାନଦୀ କୂଳସ୍ଥ ଶିମିଳିପୁର କରବର ମୌଜା ଦିଗରୁ ଆଠ ଦଶଜଣ ପଧାନ ଆଗେଆଗେ, ସେମାନଙ୍କ ପଛରେ ହଜାର ଜଣ ପ୍ରଜା ପାଥପୁର ଆଡ଼କୁ ଭାରି ଆନନ୍ଦ ଉତ୍ସାହରେ ଚାଲିଅଛନ୍ତି । ପଧାନମାନେ ପ୍ରଜାମାନଙ୍କୁ ଖୁବ୍ ଭରସା ଦେଉଅଛନ୍ତି ଯେ - ଆଜି ଆମ୍ଭମାନଙ୍କର ମାମଲା ଡିଗ୍ରୀ ହେବ । ପଇସାଏ ବି ବେଶି କର ଦେବାକୁ ପଡ଼ିବ ନାହିଁ । ପଧାନଦଳ ରତାନଦୀ ଦକ୍ଷିଣ କୂଳ ଅତଡ଼ାରୁ ଯେଉଁ ସମୟରେ ନଦୀଗର୍ଭ ବାଲିକି ଓହ୍ଲାଇ ଅଛନ୍ତି, ଠିକ୍ ସେହି ସମୟରେ ଆଠ ଜଣ କନଷ୍ଟେବଲ ଗୁଡ଼ାଏ ଗାଁ ଚୁଟିଆଙ୍କୁ ଧରି ରତାନଦୀର ଉତ୍ତରକୂଳ ଅତଡ଼ାରୁ ନଈ ବାଲିକି ଓହ୍ଲାଇ ପଡ଼ିଲେ । ନଦୀର ଠିକ୍ ମଧ୍ୟସ୍ଥଳରେ ଦୁଇ ପକ୍ଷର ଭେଟ ହେଲା । ଜଗୁନି ସୁବୁଦ୍ଧି, ଜଗବନ୍ଧୁ ପଟ୍ଟନାୟକ ଓ ଅନ୍ୟାନ୍ୟ ପଧାନଙ୍କ ହାତରେ ହାତକଡ଼ି ପଡ଼ିଗଲା । ପଛରେ ଯେଉଁ ହଜାର ଜଣ ପ୍ରଜା ଚାଲୁଥିଲେ, ସେମାନେ ପଛକୁ ବୁଲି ପଡ଼ି ପଳାଇଗଲେ । କେତେକ ମିନିଟ୍ ମଧ୍ୟରେ ଉଆରଣ୍ଟ ଆସାମି, କନଷ୍ଟେବଲ ଓ ଛାଟିଆଙ୍କୁ ଛାଡ଼ି ଆଉ ଜଳପ୍ରାଣୀର ଭେଟ ନାହିଁ ।

ଉପରଓଳି ହାକିମଙ୍କ କଚେରୀରେ ନିଷ୍ତିପୁର ସେଠୀ ଧୋବାର ମାମଲା ଡାକରା ହେବ । ଦୁଇଜଣ ପ୍ରଜା ଚାକ୍ଷୁଷ ସାକ୍ଷୀ ସାକ୍ଷ୍ୟଦେବା ନିମନ୍ତେ ବାହାରି ପଡ଼ିଲେ । ମାମଲା ସାବ୍ୟସ୍ତ ହୋଇ ଯିବାରୁ ଆସାମୀମାନଙ୍କର ଛ'ମାସ ଲେଖାଏ ମିଆଦ ହୋଇଗଲା ।

ପାଥପୁରରୁ ହାକିମମାନଙ୍କ ଡେରା ଭାଙ୍ଗି ତାଳବସ୍ତ ମୁକାମକୁ ରମାନା ହେଲା ଡୋମପଡ଼ା କହିଲା ମଧ୍ୟରେ ତାଳବସ୍ତ ବୃହତ୍ତମ ଏବଂ ସର୍ବଶ୍ରେଷ୍ଠ ଗ୍ରାମ । ସେଠାରେ ହାକିମମାନେ କେତେଗୁଡ଼ିଏ ମାମଲା ନିଷ୍ପତ୍ତି କଲାପରେ, ଯେଉଁ ଦୁଷ୍ଟପଧାନମାନେ ଦେଇ ନ ଯାଇଥିଲେ, ତାଙ୍କ ନାମ ଲେଖାଇ ଦେବାପାଇଁ ସାହେବ ମୋତେ ଅନୁରୋଧ କଲେ । ମେଳିର ସରଦାର ପଧାନମାନଙ୍କ ନାମ କହିଲି । ହାକିମ ନିଜେ ସେମାନଙ୍କ ନାମ ଲେଖି ନେଲେ । ବର୍ଷକ ସକାଶେ ସଚ୍ଚରିତ୍ର ରହିବା ନିମନ୍ତେ ଜାମିନ୍ ଦେବା ସକାଶେ ସେମାନଙ୍କ ନାମରେ ପରୁଆନା ବାହାରିଲା ।

ପରଦିନ ସକାଳେ ମୁଁ ବସାରୁ ବାହାରି କଚେରୀ ପିଣ୍ଡା ଉପରେ ବସିବା ମାତ୍ରକେ ଦଶ ବାରଜଣ ପଧାନ ଓ ଗୁଡ଼ିଏ ପ୍ରଧାନପ୍ରଧାନ ପ୍ରଜା ପିଣ୍ଡାତଳେ ଗୋହିରି ଦାଣ୍ଡ କାଦୁଅରେ ଲମ୍ବଲମ୍ବ ପଡ଼ିଗଲେ, " ଧର୍ମାବତାର ରକ୍ଷା କରନ୍ତୁ ; ହଜୁର ଆମ୍ଭମାନଙ୍କର ମା-ବାପା, ରକ୍ଷାକରନ୍ତୁ ।" ହୁକୁମ ହେଲା, "ତୁମ୍ଭେମାନେ ଯେବେ ଆମ୍ଭ କଥା ଅନୁସାରେ କାର୍ଯ୍ୟ କର, ତେବେ ରକ୍ଷା ପାଇପାର ।" ସମସ୍ତ ପଧାନ ଏକାବେଳେ କହି ପକାଇଲେ, "ଆଜ୍ଞା କରନ୍ତୁ, ଆଜ୍ଞା କରନ୍ତୁ "

ଆମ୍ଭର ପ୍ରଥମ କଥା - ତୁମ୍ଭେମାନେ ଆପଣା ଆପଣା ଜମି ଜରିବ କରାଇ ଦେବ, କୌଣସି ପ୍ରକାର ଗୋଳମାଳ କରିବ ନାହିଁ ।

ପଧାନମାନେ - ଆଜ୍ଞା, ଆଜ୍ଞା, ଆଜ୍ଞା ।

ଦ୍ୱିତୀୟ ଆଦେଶ - କଳ୍ପିତ ବୃଦ୍ଧି ଜମାରେ ଜମିର ଜମା ଭିଆଣ ହେବ ।

ପଧାନମାନେ - ଆଜ୍ଞା, ଆଜ୍ଞା, ଆଜ୍ଞା ।

ତୃତୀୟ ଆଦେଶ - ଗତ ପାଞ୍ଚବର୍ଷର ଖଜଣା କଳନ୍ତର ସହିତ ଆଜି ସୂର୍ଯ୍ୟାସ୍ତ ପୂର୍ବରୁ ସମସ୍ତ ମୌଜାର ପଧାନମାନେ ଦାଖଲ କରିବେ ।

ସାହେବ ତିନି ଜଣ ଚାକରଙ୍କୁ ବାହାର କରିଦେଇ ଜଣେ ମାତ୍ର ରଖିଲେ । ଏହିପରି ଅନ୍ୟାନ୍ୟ ବିଭାଗରୁ ମଧ୍ୟ ଚାକର କମାଇବାକୁ ଲାଗିଲେ । ଖନ୍ଦାଘରେ ସୁଆର ପାଚକ ବ୍ରାହ୍ମଣ ଥିଲେ ଛ' ଜଣ । ଦୁଇଜଣଙ୍କୁ ରଖି ଚାରିଜଣଙ୍କୁ ବାହାର କରିଦେଲେ । ପଦଚ୍ୟୁତ ସୁଆରମାନଙ୍କ ମଧ୍ୟରୁ ଜଣେ କଟକ ଜିଲ୍ଲାବାସୀ ଥିଲା । ସେ ତାହାର ଚାକିରି ରକ୍ଷାପାଇଁ ମୋତେ ଧରି ପଡ଼ିଲା । ମୁଁ ତାକୁ କମିଶନରଙ୍କ ପାଖକୁ ନେଇଯାଇ କହିଲି, ''ଏହି ପାଚକଟି ନ ରହିଲେ, ରାଜାଙ୍କ କାର୍ଯ୍ୟ ଚଳିବ ନାହିଁ ଏହି ପାଚକ ରାଜାଙ୍କ ସକାଶେ ମିଷ୍ଟାନ୍ନ ପ୍ରସ୍ତୁତ କରେ, ପାଉଁରୁଟି ତୟାର କରି ଜାଣେ ।'' ସାହେବ ହୁକୁମ କଲେ - ଏପରି ପାଚକ ଜଣେ ରହିବା ଆବଶ୍ୟକ, କିନ୍ତୁ ତାହାର ମାସିକ ବେତନ ସାତ ଟଙ୍କା ସ୍ଥଳେ ତିରିଶ ଟଙ୍କା ହେବା ଉଚିତ୍ ।'' ସେ ସେହି ବେତନରେ ରହିଗଲା ।

ଏହି ସମୟରେ ଉତ୍କଳର ସ୍ଥାୟୀ କମିଶନର ଉତ୍କଳ - ବନ୍ଧୁ ରେଭେନ୍‌ସା ସାହେବ ତିନିମାସ ରେଭିନିଉ ବୋର୍ଡ଼ର ମେମ୍ବର ହୋଇଯିବାରୁ, କଟକ ଜିଲ୍ଲାର କଲେକ୍ଟର ଜନ୍ ବୀମ୍‌ସ ସାହେବଙ୍କ ମଧ୍ୟରେ ନିଯୁକ୍ତ ହେଲେ । ରେଭେନ୍‌ସା ଓ ବୀମ୍‌ସ ସାହେବଙ୍କ ମଧ୍ୟରେ ମନୋମାଳିନ୍ୟ ଚଳି ଆସୁଥିଲା । ବୋର୍ଡ଼ରେ କାର୍ଯ୍ୟ କାଳ ସମାପ୍ତ ଉତ୍ତାରେ ରେଭେନ୍‌ସା ସାହେବ ଅନ୍ୟତ୍ର କମିଶନର ପଦରେ ନିଯୁକ୍ତ ହୋଇ ଯାଇଥିଲେ ଜନ୍ ବୀମ୍‌ସ ସ୍ଥାୟୀ ରୂପେ ଉତ୍କଳରେ ରହିଯାଇଥାନ୍ତେ । ମାତ୍ର ବୀମ୍‌ସ ସାହେବଙ୍କର ଉତ୍କଳର କମିଶନର ପଦରେ ନିଯୁକ୍ତି ରେଭେନ୍‌ସା ସାହେବଙ୍କର ବାଞ୍ଛନୀୟ ନୁହେଁ । ରେଭେନ୍‌ସା ସାହେବ ଅଳ୍ପଦିନ ସକାଶେ ଉତ୍କଳକୁ ଫେରି ଆସିଲେ । ଜନ୍ ବୀମ୍‌ସ ଆପଣାର ପୂର୍ବ ପଦକୁ ବାହୁଡ଼ିଗଲେ । ବର୍ତ୍ତମାନ ଏହି ଦୁଇ ହାକିମଙ୍କ ମଧ୍ୟରେ ବିବାଦ ପ୍ରବଳତର ରୂପେ ଚଳିବାକୁ ଲାଗିଲା । ଏହି ସମୟରେ ଲେଫ୍ଟନେଣ୍ଟ ଗଭର୍ଣ୍ଣର ଓଡ଼ିଶା ଗସ୍ତକୁ ଆସିଥିଲେ । ହାକିମମାନଙ୍କ ମଧ୍ୟରେ ଏ ପ୍ରକାର ବିବାଦ ବିସମ୍ବାଦ ଚଳୁଥିବାର ଶୁଣିପାରି ସେ କହିଲେ, ''Orissa wants new blood'' । ରେଭେନ୍‌ସା ବର୍ଦ୍ଧମାନର କମିଶନର ପଦରେ,

ଜନ୍ ବୀମ୍‌ସ ଶ୍ରୀହଟ୍ଟର ଜଜ୍ ଏବଂ କମିଶନର ପଦରେ ନିଯୁକ୍ତ ହୋଇ ଚାଲିଗଲେ । ଓଡ଼ିଶାର କମିଶନର ପଦରେ ନିଯୁକ୍ତ ହୋଇ ଆସିଲେ - ସ୍ମିଥ୍ । ବୀମ୍‌ସ ମୋର ପରମ ବନ୍ଧୁ ଓ ସହାୟ ଥିଲେ । ସେ ଓଡ଼ିଶାରୁ ସ୍ଥାନାନ୍ତରିତ ହେବା ଦିନରୁ ମୋର ଭାଗ୍ୟାକାଶ ପରିବର୍ତ୍ତିତ ହେବାକୁ ଲାଗିଲା ।

ବୀମ୍‌ସ ପରେ ପରବର୍ତ୍ତୀ ଶାସକଙ୍କର ଦୃଷ୍ଟିଭଙ୍ଗୀ ତାଙ୍କ ପ୍ରତି ଆଦୌ ଭଲ ନ ଥିଲା । ଫକୀରମୋହନଙ୍କ ଭାଷାରେ, ନନ୍ଦକିଶୋର ବାବୁ ଏବଂ ମେନେଜର ବନମାଳୀବାବୁ ଦୁଇଜଣ ଏକତ୍ର କମିଶନର ସହେବଙ୍କ ସହିତ ମୋ ସମ୍ବନ୍ଧରେ କଥୋପକଥନ ସମୟରେ କହିଲେ, "Fakir Mohan Babu is a very honest man"(ଫକୀରମୋହନ ବାବୁ ସାଧୁପ୍ରକୃତିର ଲୋକ) । ମାତ୍ର ସାହେବ ମହୋଦୟ ଉତ୍ତର ଦେଲେ, "I have no faith in that man" (ମୋର ସେହି ଲୋକ ଉପରେ ବିଶ୍ୱାସ ନାହିଁ ।) ।

'ରାମାୟଣ ବାଳକାଣ୍ଡ'ର ପ୍ରଥମ ମୁଦ୍ରଣ ସମୟରେ ସେଥିରେ ଉକ୍ତ ଉତ୍ସର୍ଗପତ୍ର ସଂଯୁକ୍ତ ଥିଲା ।

To

John Beames Esquire B.C.S.

Honoured Sir,

I beg most respectfully to dedicate this work to you as a token of the affectionate gratitude which Orissa has always felt towards you for the intelligent and heart - felt interest you have evinced in the improvement of the Oriya language and Welfare of her people.

I am

Dhenkanal — Honoured Sir,

1880 — Your most obedient Servant,

Phakir Mohan Senapati

ଏଥିରୁ ବୀମ୍‌ସଙ୍କ ପ୍ରତି ଲେଖକଙ୍କର ମନୋଭାବ ଅନୁମିତ ହେଉଛି ।



# ଆଧୁନିକ ଆର୍ଯ୍ୟଭାଷାମାନଙ୍କ ସହିତ ଉଡ଼ିଆ (ଓଡ଼ିଆ) ଭାଷାର ସମ୍ପର୍କ

ମୂଳ ରଚନା : ଜନ୍ ବୀମ୍ସ

ଭାଷାନ୍ତର : ଶ୍ରୀ ପ୍ରଫୁଲ୍ଲ ବେହେରା

ବାଲେଶ୍ୱର ସରକାରୀ ବିଦ୍ୟାଳୟର ଜୈନୈକ ପଣ୍ଡିତ ବାବୁ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଲିଖିତ ପୁସ୍ତକ ''ଓଡ଼ିଆ ସ୍ୱତନ୍ତ୍ର ଭାଷା ନହେ'' (ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ନୁହେଁ) ଇତି ମଧ୍ୟରେ ପ୍ରକାଶିତ ହୋଇଛି । ଏଇଛୋଟିଆ ବହିଟି ଭାଷାତତ୍ତ୍ୱ ଦୃଷ୍ଟିରୁ ବିଶଦ ଭାବରେ ଅନେକ ଅଭାବ ରହିଥିବା ଦିଗକୁ ଅଙ୍ଗୁଳି ନିର୍ଦ୍ଦେଶ କରୁଥିଲେ ହେଁ ତାଙ୍କ ନିଜ ଭାଷା ବଙ୍ଗଳାର ଅପଭ୍ରଂଶ ଜାଣି ଅନେକ ବହିଟିକୁ ଦେଖି ମର୍ମାହତ ହୋଇଛନ୍ତି । ଏଇ ବିଷୟଟିକୁ ନେଇ ସ୍ଥାନୀୟ ଅଞ୍ଚଳରେ ଉତ୍ତେଜନା ଦେଖାଦେଇଛି । ମୁଁ ପୂର୍ବ ଅପେକ୍ଷା ବର୍ତ୍ତମାନ ବିଷୟଟି ଉପରେ ଅଧିକ ଦୃଷ୍ଟି ଦେଇଛି । ମୋ ''ଆର୍ଯ୍ୟଭାଷାର ତୁଳନାତ୍ମକ ବ୍ୟାକରଣ'' ଲେଖାପାଇଁ ଅନୁରୂପ ବିଷୟଟି ଉପରେ ଯତ୍ନଶୀଳ ହେବାକୁ ହେବ ଏଇଥିପାଇଁ ଯେ ''ଓଡ଼ିଆ ଗୋଟିଏ ଭାଷା'' ସେ ତାର ନ୍ୟାର୍ଯ୍ୟ ଅଧିକାର ପାଉ ।

ଅନ୍ୟମାନେ ଏହା ଦେଖି ଉତ୍ସାହପ୍ରଦ ହେବେ ଯେ ଏଇ ଭାଷାର ଗଠନ ଦିଗରେ ମୁଁ ଏକ ଚେଷ୍ଟା ଆରମ୍ଭ କରିଛି ବୋଲି । ମୋ ବ୍ୟାକରଣକୁ ଅଧିକ ମହତ୍ତ୍ୱ ଦେବା ପାଇଁ ମୁଁ ଯେଉଁ ବିଷୟ ଉପରେ ଆଲୋକପାତ କରିଛି, ସେ ପ୍ରସଙ୍ଗରେ ମୋ ମତର କିଛି ସଂକ୍ଷିପ୍ତ ସୂଚନା ଦେବାପାଇଁ ମୁଁ ଚାହୁଁଛି ।

ପୃଥିବୀ ଇତିହାସର ଯେକୌଣସି ସମୟରେ ଆର୍ଯ୍ୟମାନେ ଓଡ଼ିଶାରେ ପ୍ରବେଶ କରିଥାନ୍ତୁନା କାହିଁକି ନିଶ୍ଚିତ ଭାବରେ ସ୍ୱୀକାର୍ଯ୍ୟ ଯେ ଦେଶାନ୍ତର ବାସର ପଥପ୍ରଦର୍ଶକ ନେତୃବୃନ୍ଦ ଥିଲେ । ଆଜି ଓଡ଼ିଆକୁ ହୀନ ଦୃଷ୍ଟିରେ ଦେଖୁଥିବା ଲୋକମାନଙ୍କର ପୂର୍ବଜମାନେ ସେମାନଙ୍କ ଜାତିର ପଥପ୍ରଦର୍ଶକ ନିଶ୍ଚିତ ଭାବରେ ଥିଲେ ବୋଲି ଅବିଶ୍ୱାସଯୋଗ୍ୟ ହୋଇପାରେ । ସଦାଭ୍ରମଣଶୀଳ ଯାଯାବର ଜୀବନରେ ସେ ଯାହା ହେଉନା କାହିଁକି, କର୍ମଠ କିମ୍ବା ପ୍ରଗତିଶୀଳମାନେ ଶୀଘ୍ରଶୀଘ୍ର ଯାତ୍ରା ଆରମ୍ଭ କରନ୍ତି ନାହିଁ ; ବରଂ ଦାୟାଦମାନେ

ବେଳେବେଳେ ସେମାନଙ୍କୁ ସମ୍ପୂର୍ଣ୍ଣ ସହାୟତା ପ୍ରଦାନ କରନ୍ତି । ନିଶ୍ଚିତ ଭାବରେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଅନ୍ୟତ୍ର ଚାଲିଯାଉଥାନ୍ତି । କଥାଟି ହେଉଛି, ସେମାନଙ୍କ ମଧ୍ୟରୁ କିଏ ବା ବାଧାବିଘ୍ନକୁ ସମ୍ମୁଖୀନ ହେବାକୁ ଯାଉଛି ? ପୁଣି ଦୁର୍ବଳଙ୍କୁ ପଦାଘାତ କରିବାକୁ ହେବ । ଏହା ହେଉଛି ୟୁରୋପର ଇତିହାସରେ 'ସେଲ୍‌ଟ୍‌ସ'(Celts) ଓ ଭାରତର ଓଡ଼ିଆମାନଙ୍କ ଇତିହାସ । ବଙ୍ଗୋପସାଗରର ଉପରିଭାଗରେ ପହଞ୍ଚିଲା ପରେ, ସେଠାରୁ ବଙ୍ଗାଳୀମାନଙ୍କଦ୍ୱାରା ବାରମ୍ବାର ବିତାଡ଼ିତ ହେବା ବଶତଃ ପୂର୍ବାଞ୍ଚଳ ସେମାନଙ୍କ ପାଇଁ ଦୁର୍ଦ୍ଧାନ୍ତ ଆର୍ଯ୍ୟେତର ଜନଜାତିଙ୍କ ଦ୍ୱାରା ପ୍ରଧାନ ଆଶ୍ରୟସ୍ଥଳ ଭାବେ ବିବେଚିତ ହୋଇଥିଲା । ସେମାନଙ୍କ ପାଇଁ ସହଜ ଥିଲା ଗୋଟିଏ ପଥ : ଦକ୍ଷିଣାଞ୍ଚଳ, ଲମ୍ବା ଅଣଅସାରିଆ ଅଞ୍ଚଳ - ପାହାଡ଼ ଓ ସମୁଦ୍ରର ମଧ୍ୟସ୍ଥଳୀ - ଜଙ୍ଗଲପଥ ଦେଇ ମେଦିନାପୁର ଓ ହିଜୀଲୀରେ ପହଁଚିଲେ । ଏହି ସ୍ଥାନଟିର ନାମ ସେମାନେ ରଖିଥିଲେ "ଉତ୍କଳ ଦେଶ" ।

ଯଦି ଏଇ କଥାଟିକୁ ବିଶ୍ୱାସକୁ ନିଆଯାଏ, ମୁଁ ଭାବୁଛି, ସେମାନେ ନିଶ୍ଚିତ ଭାବରେ ଏହାକୁ ଗ୍ରହଣ କରିବେ ଯେ, ଆମ ପଣ୍ଡିତଙ୍କ ମତରେ ସେମାନଙ୍କ ଭାଷା ବଙ୍ଗଳାଭାଷାରୁ ଆସିଅଛି । କିନ୍ତୁ ଏହା ସତ ନୁହେଁ, ସେମାନେ ବଙ୍ଗଦେଇ ଅତିକ୍ରମ କରୁଥିବାବେଳେ ସେଠାରେ ଜନବସତି ନଥିଲା । ବଙ୍ଗାଳୀମାନେ ଆର୍ଯ୍ୟମାନଙ୍କ ବହୁତ ପଛରେ ଥିଲେ । ଓଡ଼ିଆମାନେ ସେ ଅଞ୍ଚଳ ଛାଡ଼ିବା ପରେ ସେମାନେ ସେଠାକୁ ଆସିଥିଲେ । ଅଷ୍ଟମ ଶତାବ୍ଦୀ ଆରମ୍ଭରେ ହେମଚନ୍ଦ୍ର ଜାଣିଥିଲେ ଯେ ଉଦ୍‌କଳୀ "ଉଡ୍ର" ପ୍ରାକୃତର ଗୋଟିଏ ସ୍ୱତନ୍ତ୍ରଧାରା - ଗୌଡ଼ୀ, ବେଙ୍ଗଲୀଠାରୁ । ଏଣୁ ଓଡ଼ିଆ ଯେ ଗୋଟିଏ ସ୍ୱତନ୍ତ୍ର ଭାଷା - ଏହା ଗ୍ରହଣ କରିବାରେ ଆଉ ଅସୁବିଧା କେଉଁଠି ?

ଆର୍ଯ୍ୟମାନଙ୍କ ସାତୋଟି ଦେଶ ଦୁଇଟି ଭାଗରେ ବିଭକ୍ତ ହୋଇଥିଲା । ଗୋଟିଏ ଭାଗରେ ସଂସ୍କୃତ ଥିବାବେଳେ ଅନ୍ୟ ଭାଗରେ ଆରବୀ ଓ ପାର୍ଶିଆନ୍ ଥିଲା । ପୂର୍ବୋକ୍ତ ହେଉଛନ୍ତି ବଙ୍ଗାଳୀ, ଓଡ଼ିଆ, ମରାଠୀ । ଅନ୍ୟମାନେ ହେଉଛନ୍ତି ହିନ୍ଦୀ, ପଞ୍ଜାବୀ, ସିନ୍ଧୀ, ଗୁଜୁରାଟୀ ଗୋଟିଏ ବାକ୍ୟ ଗଠନ କରିବାରେ ଅସୁବିଧା ହେବ ନାହିଁ । ଏପରିକି ଗୋଟିଏ ବହିମଧ ଲେଖିହେବ - ହିନ୍ଦୀ, ପାର୍ଶି, ଆରବୀ ଓ ତୁର୍କୀ ଭାଷାରେ । ଯେଉଁଥିରେ ଶତକଡ଼ା ଷାଠିଏ ଭାଗ ଶବ୍ଦ ସମଭାବାପନ୍ନ ପରି ଜଣାଯିବ, କାରଣ ଶବ୍ଦଗୁଡ଼ିକ ଆରବୀରୁ ଗୃହୀତ ହୋଇଛି । ତଥାପି କେହି ଜାଣିପାରିବେ ନାହିଁ ଯେ ଏଇ ଭାଷାଗୁଡ଼ିକ ପରସ୍ପର

ସହିତ ସମ୍ପର୍କିତ ବୋଲି । ଅନୁରୂପ ଭାବରେ ଗୋଟିଏ ବହି ବଙ୍ଗଳା, ଓଡ଼ିଆ, ମରାଠୀ ଭାଷାରେ ଲେଖିହେବ, ସମଭାବାପନ୍ନ ଶବ୍ଦ ସହିତ । ଏଣୁ ଭାଷା ସହିତ କିମ୍ବା ଭାଷା ବିରୁଦ୍ଧରେ କେହି ଯୁକ୍ତି କରି କାହାର ଦୋଷ ଦେଖାଇବେ ନାହିଁ ।

କଥାଟି ହେଉଛି ସଂସ୍କୃତ ଶବ୍ଦ ବଙ୍ଗଳା ଓ ଓଡ଼ିଶାର ପଣ୍ଡିତମାନେ ବହୁଳ ଭାବରେ ବ୍ୟବହାର କରୁଥିଲେ । ସେ ଶବ୍ଦଗୁଡ଼ିକ ଜୀବନ୍ତ ଶବ୍ଦ ନଥିଲେ , ସେ ସବୁ ମୃତ ; ଅନେକ ଯୁଗରୁ ସେମାନେ ମୃତ । ବର୍ତ୍ତମାନ କେବଳ ସେ ସବୁ ଆଭାସ ଭଳି ତଡ଼ିତ୍ ସଂଚାର କରୁଛନ୍ତି । ଭାଷାରେ ରହିଥିବା ବିପୁଳ ଶବ୍ଦଭଣ୍ଡାର ସହିତ ସେଥିରେ କିଛି ବିଶେଷତା ନାହିଁ ।

ସେଇ ପଣ୍ଡିତମାନେ ଅନେକ ଯୁଗରୁ ମରିଗଲେଣି । ସେମାନଙ୍କ ପରେ ତାଙ୍କ ପୁତ୍ର, ବର୍ତ୍ତମାନ ତାଙ୍କ ନାତିମାନେ ତାଙ୍କ ସ୍ଥାନ ଦଖଲକରି ବସିଛନ୍ତି ବୋଲି ସରଳ ଭାଷାରେ କହିହେବ । ଏଇ ସଂସ୍କୃତ ଶବ୍ଦଗୁଡ଼ିକ ଯାହାକୁ ଓଡ଼ିଆ ଓ ବଙ୍ଗାଳୀମାନେ ଅଢ଼େଇ ହଜାର ବର୍ଷତଳେ ବ୍ୟବହାର କରୁଥିଲେ, ଶବ୍ଦର ଭାଗ୍ୟରେ ଯାହାସବୁ ଘଟିଥାଏ(ପରିବର୍ତ୍ତନ), ତାହା ଘଟିଛି । ଶବ୍ଦ ଅପଭ୍ରଂଶ ହେବା ସହିତ ବିକୃତ ହୋଇପଡ଼ିଛି । ମୂଳ ଶବ୍ଦ ସହିତ ସେସବୁର ଆଉ ସମ୍ପର୍କ ନାହିଁ । ଏହି ଅପଭ୍ରଂଶ ଶବ୍ଦ, ଯାହାକୁ ତଦ୍‌ଭବ ଶବ୍ଦ ବୋଲି କୁହାଯାଉଛି, ତାହା ହେଉଛି ଜୀବନ୍ତ ଶବ୍ଦ । ସେସବୁ ଲୋକପ୍ରଚଳିତ ଭାଷାଭାବେ ରୂପ ପରିଗ୍ରହଣ କରିଛନ୍ତି । ଆମ ଅତିଦୋଷଦର୍ଶୀ ଲେଖକମାନେ ଏହି ଶବ୍ଦସବୁକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ସେମାନେ ସେମାନଙ୍କ ଶବ୍ଦ ପାଇଁ ପୁଣି ସଂସ୍କୃତ ଶବ୍ଦ ପାଖକୁ ଫେରିଯାଆନ୍ତି । ସେମାନେ ନିଜ ରୁଚି ମୁତାବକ ଲେଖା ଲେଖନ୍ତି । ଦେଖ ସେମାନେ କହନ୍ତି, ଓଡ଼ିଆ ଓ ବଙ୍ଗଳା ହେଉଛି ଗୋଟିଏ ଭାଷା । ଉଦାହରଣ ଦେଇ କହନ୍ତି ଅମୁକ, ଅମୁକ ବହି ପଢ଼ । ମୁଁ କିନ୍ତୁ ପ୍ରସ୍ତାବ ଦେବି, ସେମାନେ ଢାକାର ଜଣେ ଚାଷୀ ଓ ଘୁମୁସରର ଜଣେ ଚାଷୀକୁ ଉଦାହରଣ ରୂପେ ନିଅନ୍ତୁ ଏବଂ ଦେଖନ୍ତୁ, ସେମାନେ ନିଜ କଥାବାର୍ତ୍ତାରୁ କ'ଣ ବୁଝାବୁଝି ହେଉଛନ୍ତି ।

ଏହାପରେ ବୀମ୍‌ସ୍ ସାହେବ ଉଦାହରଣ ଦେଇ ବ୍ୟାକରଣର ଆଶ୍ରୟରେ ଓଡ଼ିଆ ଭାଷା ସହିତ ଅନ୍ୟ ଆର୍ଯ୍ୟଭାଷାର ସମ୍ପର୍କ ବିଷୟରେ ବର୍ଣ୍ଣନା କରିଅଛନ୍ତି ।



# ଓଡ଼ିଶାର ଦେଶୀୟ ସାହିତ୍ୟ

ମୂଳ ରଚନା : ଜନ୍ ବୀମ୍ସ
ଭାଷାନ୍ତର : ଅଧ୍ୟାପକ ଲୋକନାଥ ବେହେରା

ବିଦେଶର ପଣ୍ଡିତମାନଙ୍କର ଗୋଟିଏ ସାଧାରଣ ଧାରଣା ରହିଛି ଯେ ଆଧୁନିକ ଭାରତୀୟ ଦେଶୀୟ ଭାଷାଗୁଡ଼ିକ କେବଳ ବୃତ୍ତିଗତଭାଷା, ଯେଉଁଥିରୁ ସଭ୍ୟ ଜାତିର ଅପରିମାର୍ଜିତ ଚଳନ୍ତି ଆବଶ୍ୟକତାକୁ ବୁଝିହେଉଛି । କିନ୍ତୁ ସେମାନଙ୍କର ସେପରି କିଛି ନାହିଁ, ଯାହାକୁ ସାହିତ୍ୟ କହିହେବ । ଏପରିକି ଯେଉଁମାନେ ଭଲଭାବରେ ଅବଗତ ଅଛନ୍ତି, ସେମାନେ ମଧ୍ୟଯୁଗୀୟ କବିତା ଗାଥାକବିତାର ଉପରସ୍ତରକୁ ଯାଇପାରିନାହିଁ ବୋଲି କହିଥାନ୍ତି । ଏପରି ଗୋଟିଏ ମନ୍ତବ୍ୟ ଦେବା ପୂର୍ବରୁ ଅନ୍ତତଃ ସୋମାନେ ସେହି ପୁସ୍ତକ ସମ୍ବନ୍ଧରେ ଜାଣିବା ତଥା ବହିସବୁ ପଢ଼ିବା ପାଇଁ ଆହ୍ୱାନ କରୁଛି । ମୁଁ କହିପାରେ, ଅତି ଅଳ୍ପ ୟୁରୋପୀୟ ବିଦ୍ୱାନ୍ ହିନ୍ଦୁମାନଙ୍କ ମଧ୍ୟଯୁଗୀୟ ସାହିତ୍ୟ ସହିତ ପରଚିତ । ସେମାନେ କେତେକ ବହି ବିଷୟରେ ଜାଣି ନାହାନ୍ତି । ତିନୋଟି ପ୍ରସଙ୍ଗକୁ ଲକ୍ଷ୍ୟ କରାଯାଉ । ପ୍ରଥମତଃ : ସେସବୁ ଅଧିକ ଭାବରେ ଲିଖିତ । ଦ୍ୱିତୀୟତଃ : ଅଧିକାଂଶ କେବଳ ପୁନଃ କଥିତ ବ୍ରାହ୍ମଣ୍ୟଧର୍ମରେଲିଖିତ ଲୋକକଥାର ପୁନରାବୃତ୍ତି ; ଯଥା - ପୁରାଣ, ମହାଭାରତ ଇତ୍ୟାଦିରୁ । ତୃତୀୟତଃ : ସେସବୁ ଗୀତ ଆକାରରେ ଲିଖିତ । କିନ୍ତୁ ଏ ସମସ୍ତ ଆପତ୍ତି ସତ୍ତ୍ୱେ, ଭାଷାର ବିକାଶ ଦିଗରେ ଏସବୁ ଲେଖାର ଭୂମିକା ରହିଛି । ସେ ଦିଗରୁ ସେସବୁ ମୂଲ୍ୟବାନ୍ ଅଟନ୍ତି । ଗାଆଁ ମାନଙ୍କରେ ରହୁଥିବା ଜନସାଧାରଣଙ୍କ ମଧ୍ୟରେ ଏହି ଲେଖାଗୁଡ଼ିକ ଅତ୍ୟନ୍ତ ଲୋକପ୍ରିୟ । ସ୍ଥାନୀୟ ଲୋକଙ୍କ ଚଳଣି ଓ ଚିନ୍ତାଧାରାର ଝଲକ ଉକ୍ତ ଲେଖାଗୁଡ଼ିକରୁ ମିଳିଥାଏ । ଅଳ୍ପ କେତେକ କୃତି ଉଚ୍ଚ ଧରଣର ଏବଂ କବିତାର ଲାଳିତ୍ୟ ଦୃଷ୍ଟିରୁ ସେସବୁକୁ ପଢ଼ାଯାଇପାରେ । ସେସବୁ ଗଳ୍ପରେ ଇତିହାସ, ଭୂଗୋଳ ପରିପୂର୍ଣ୍ଣ ହୋଇ ରହିଛି । ନୈତିକତାର ନିଚ୍ଛକ ଚିତ୍ର ମଧ୍ୟ ପୂରି ରହିଛି । ପ୍ରଥମ ଶ୍ରେଣୀର ଲେଖା ମଧ୍ୟରେ ଆସିବ ତୁଳସୀଦାସଙ୍କ ରାମାୟଣ, ବିହାରୀ ଲାଲଙ୍କ ସତସାଇ, ଦ୍ୱିତୀୟ ଶ୍ରେଣୀରେ ରାଜପୁତ କବିମାନଙ୍କ କୃତି, ତୃତୀୟ ଶ୍ରେଣୀରେ କବୀର, ନାମଦେବ, ତୁକାରାମ, ବେଳେବେଳେ ବିଦ୍ୟାପତି ଓ ଅନ୍ୟ ଚୈତନ୍ୟପନ୍ଥୀ ଲେଖକମାନଙ୍କର ଲେଖା ଇତ୍ୟାଦି ।

ସର୍ବୋପରି ଉଲ୍ଲେଖ କରାଯାଇପାରେ ଯେ ଏହି ସାହିତ୍ୟ ସଂରକ୍ଷଣଯୋଗ୍ୟ । ଲୋକମାନେ କିପରି ଅଟନ୍ତି ଏହା ଆମକୁ ସୂଚେଇ ଦେଉଛି ।

ଆମେ ଚାହୁଁଛୁ ପ୍ରଥମତଃ, ବିଭିନ୍ନ ଭାଷାରେ କେଉଁ ସାହିତ୍ୟକୃତିସବୁ ରହିଛି ତାହା ଜାଣିବାକୁ ହେବ । ଦ୍ୱିତୀୟତଃ, ସେସବୁକୁ ଅଧ୍ୟୟନ କରିବାକୁ ହେବ । ସଂରକ୍ଷଣ କରି ରଖିବା ସହିତ ମୁଦ୍ରଣଯୋଗ୍ୟ ଅଟେ କି ନାହିଁ ତାହା ବିଚାର କରିବାକୁ ହେବ । ତୃତୀୟତଃ, ପଣ୍ଡିତମାନଙ୍କୁ ଖୋଜି ସେସବୁର କିପରି ସମ୍ପାଦନା କରାଯିବ ସେଥିପାଇଁ ଯତ୍ନଶୀଳ ହେବାକୁ ପଡ଼ିବ ।

ଆମେ ଛାତ୍ରମାନଙ୍କ ହାତରେ ପ୍ରକୃତ ଦେଶୀୟ କୃତିକୁ ରଖିବାରେ ସମର୍ଥ ହୋଇ ପାରିବା ଯେଉଁଥିରୁ ସେ ଜାଣିପାରିବ ସେ ଯେଉଁ ଭାଷା ପଢୁଛି, ସେ କି ପ୍ରକାରର ଭାଷା, ସେ ବର୍ତ୍ତମାନ ପଢୁଥିବା "ବାଘ-ଓ ବାହାର", "ବେତାଳ ପଚିଶି" (ବେତାଳ ପଞ୍ଚବିଂଶତି) ଭଳି ଗୁଡ଼ିଏ ବାଜେ ଲେଖାପରି ନୁହେଁ ।

ସେସବୁ ଏପରି ଭାଷାରେ ଲେଖାଯାଇଛି ଯେଉଁ ଭାଷାକୁ ଜଣେ ଆଞ୍ଚଳିକ ଅଧିବାସୀ ବ୍ୟବହାର କରେନାହିଁ ଓ ଯାହାକୁ ସେ ଅତି କଷ୍ଟରେ ବୁଝିବାକୁ ଚେଷ୍ଟା କରିବ ।

ଉପର ଉଲ୍ଲିଖିତ କଥାଟିକୁ ଦୃଷ୍ଟିରେ ରଖି ମୁଁ ଓଡ଼ିଆ ଭାଷାରେ ରଚିତ ଲେଖାର ଗୋଟିଏ ତାଲିକା ସଂଯୋଜନା କରିଛି । ଆଶା କରୁଛି, ସୁଯୋଗ ଯେତେବେଳେ ଆସିଛି, ଏହି ବିଖ୍ୟାତ କୃତିଗୁଡ଼ିକୁ ପଢ଼ାଯାଉ ଏବଂ ସେସବୁ କେଡ଼େ ମୂଲ୍ୟବାନ୍ ତାହା ଦେଖାଯାଉ । "ଇଣ୍ଡିଆନ୍ ଆଣ୍ଟିକ୍ୱେରୀ"ରେ ଆବିଷ୍କାର ସମ୍ବନ୍ଧରେ ସୂଚନା ଦିଅନ୍ତୁ । ମୋ ମତରେ ଆର୍ଯ୍ୟ ଭାଷାର "ଓଡ଼ିଆ" ଗୋଟିଏ ଉତ୍ସାହପ୍ରଦ ଭାଷା ଅଟେ ।

ନିମ୍ନଲିଖିତ ତାଲିକାଟି ଅନେକ ଅନ୍ୱେଷଣର ଫଳ । କେବଳ ଏତିକିରେ ତାଲିକା ସରିଯାଇନାହିଁ । "ରସକଲ୍ଲୋଳ" ଦୀନକୃଷ୍ଣଙ୍କ ଲିଖିତ କାବ୍ୟ, ସବୁଠାରୁ ସୁପରିଚିତ ଓଡ଼ିଆ କାବ୍ୟ, ବର୍ତ୍ତମାନ ମଧ ଏହା ପରିଚିତ୍ । ଏଥିରେ ଥିବା କବିତା ପଦଗୁଡ଼ିକ ଗ୍ରାମ ସଭାରେ ଶୁଣିବାକୁ ମିଳିଥାଏ । ଶିକ୍ଷିତ ଓଡ଼ିଆମାନେ ଏଥିରେ ଥିବା ଛାନ୍ଦ ସବୁକୁ କଣ୍ଠସ୍ଥ କରିଥିବାର ଜଣାଯାଏ ।

## ତାଲିକା

**ସୂଚନା :** ନିମ୍ନଲିଖିତ ପ୍ରାଚୀନ ଓଡ଼ିଆ କୃତିଗୁଡ଼ିକ ବର୍ତ୍ତମାନ ରହିଥିବାର ଜଣାଯାଏ । ରାଜ୍ୟର ବିଭିନ୍ନ ସ୍ଥାନରୁ ସେସବୁର ନକଲ ଯାହା ତାଳପତ୍ରରେ ଲିଖିତ, ସଂଗ୍ରହ କରାଯାଇପାରିବ ।

| | | |
|---|---|---|
| ୧) | ସୁଭଦ୍ରା ପରିଣୟ | କାବ୍ୟ |
| ୨) | ରସ ମଞ୍ଜରୀ | କାବ୍ୟ |
| ୩) | ପ୍ରେମସୁଧାନିଧି | କାହାଣୀ |
| ୪) | ରସ ପଞ୍ଚକ | କାହାଣୀ |
| ୫) | ରସିକ ହାରାବଳୀ | କବିତା |
| ୬) | ସୁବର୍ଣ୍ଣରେଖା | କବିତା |
| ୭) | ଶୋଭାବତୀ | କବିତା |
| ୮) | ଚିତ୍ରକାବ୍ୟ | କବିତା |
| ୯) | କାମକୌତୁକ | କବିତା |
| ୧୦) | ଦୁ ପାଇ (ଦୁଇ ପୋଇ) | ଚୌପଦୀ |
| ୧୧) | ଶାପୀ (ଛ' ପୋଇ) | ଗୀତ |
| ୧୨) | ନ ପାୟୀ (ନ'ପୋଇ) | ଗୀତ |
| ୧୩) | ଶବ୍ଦମାଳା | କ୍ଷୁଦ୍ର ଅଭିଧାନ |
| ୧୪) | ଧ୍ୱନିମଞ୍ଜରୀ | କବିତା ପ୍ରବନ୍ଧ |
| ୧୫) | ଷଡ଼ ଋତୁ | ଛଅ ଋତୁ ସମ୍ବନ୍ଧୀୟ କବିତା |
| ୧୬) | ବୈଦେହୀଶ ବିଳାସ | କାବ୍ୟ |
| ୧୭) | ଲାବଣ୍ୟବତୀ | କାବ୍ୟ |
| ୧୮) | କୋଟିବ୍ରହ୍ମାଣ୍ଡ ସୁନ୍ଦରୀ | କାବ୍ୟ |
| ୧୯) | କଳାକଉତୁକ | କବିତା |
| ୨୦) | ସୁଭଦ୍ରା ସାର | କବିତା |
| ୨୧) | ପୁରୁଷୋତ୍ତମ ମାହାତ୍ମ୍ୟ | କୃଷ୍ଣ ସମ୍ବନ୍ଧୀୟ ଭକ୍ତି କବିତା |
| ୨୨) | ତ୍ରୈଲୋକ୍ୟମୋହିନୀ | ଭକ୍ତି କବିତା |
| ୨୩) | ଚିତ୍ର ଲେଖା | ଭକ୍ତି କବିତା |
| ୨୪) | ହେମ ମଞ୍ଜରୀ | ଭକ୍ତି କବିତା |
| ୨୫) | ରସଲେଖା | ଭକ୍ତି କବିତା |
| ୨୬) | କାମକଳା | ଭକ୍ତି କବିତା |
| ୨୭) | ପ୍ରେମଲତା | ଭକ୍ତି କବିତା |
| ୨୮) | ଭାବବତୀ | ଭକ୍ତି କବିତା |

୨୯) ମୁକ୍ତାବତୀ ଭକ୍ତି କବିତା
୩୦) ଗୀତା ଭିଧାନ ଅଭିଧାନ

ଉପରୋକ୍ତ ତାଲିକାରେ ପ୍ରଯୁକ୍ତ ତିରିଶଟିକୃତି ଘୁମୁସରର ବିଖ୍ୟାତ କବି ଉପେନ୍ଦ୍ର ଭଞ୍ଜଙ୍କର ।

୩୧) ରସକୋଲ୍ଲଳ ଦୀନକୃଷ୍ଣ ଦାସ
୩୨) ଅନଙ୍ଗରେଖା ଦୀନକୃଷ୍ଣ ଦାସ
୩୩) ଭାଗବତ ଜଗନ୍ନାଥ ଦାସ
୩୪) ମହାଭାରତ ସାରଳା ଦାସ
୩୫) ମହାଭାରତ କୃଷ୍ଣ ଦାସ
୩୬) ମହାଭାରତ ଚିନ୍ତାମଣି
୩୭) ଭଗବଦ୍‌ଗୀତା ଗୁଣ୍ଡିଚା ଦେବୀ
୩୮) ହରିବଂଶ ନାରାୟଣ ଦାସ
୩୯) ରାମାୟଣ ବଳରାମ ଦାସ
୪୦) ପଦ୍ମ ପୁରାଣ ନୀଳାମ୍ବର ଦାସ
୪୧) କାର୍ତ୍ତିକ ମାହାତ୍ମ୍ୟ ଶିବ ଦାସ
୪୨) ମାଘ ମାହାତ୍ମ୍ୟ କୃଷ୍ଣ ଦାସ
୪୩) ବୈଶାଖ ମାହାତ୍ମ୍ୟ ଅଚ୍ୟୁତ ଦାସ
୪୪) ଏକାଦଶୀ ମାହାତ୍ମ୍ୟ ଦିବାକର ଦାସ
୪୫) ଗଙ୍ଗା ମାହାତ୍ମ୍ୟ ଦିବାକର ଦାସ
୪୬) ଭାରତ ହରିବଂଶ ବଳରାମ ଦାସ
୪୭) ଆରତ ବଂଶ ନିତ୍ୟାନନ୍ଦ ଦାସ
୪୮) ଯୁଗଳ ରସାମୃତ ସୂର୍ଯ୍ୟ ବର୍ମା
୪୯) ବାଉରୀ ଓ ଚୌରୀ ସୂର୍ଯ୍ୟ ବର୍ମା
୫୦) ବିଦଗ୍‌ଦ ଚିନ୍ତାମଣି (ବିଦଗ୍‌ଧ ଚିନ୍ତାମଣି) ଅଭିମନ୍ୟୁ ସାମନ୍ତସିଂହାର
୫୧) ବିଚିତ୍ର ରାମାୟଣ ବିଶି
୫୨) ଆରତତ୍ରାଣ ବିଶି
୫୩) ରଜସ୍ତୁତି ଜଗନ୍ନାଥ ଦାସ
୫୪) ହରିପ ସ୍ତୁତି (ମୃଗୁଣୀ ସ୍ତୁତି) ଜଗନ୍ନାଥ ଦାସ
୫୫) ଦୃଢ଼ ଭକ୍ତି ବା ଦରତା ଭକ୍ତି (ଦାର୍ଢ୍ୟତା ଭକ୍ତି) ବଳରାମ ଦାସ

| | |
|---|---|
| ୫୬) ଗୁଣସାଗର | ବଳରାମ ଦାସ |
| ୫୭) ମଥୁରାମଙ୍ଗଳ | ବଳରାମ ଦାସ |
| ୫୮) ଲକ୍ଷ୍ମୀ ପୁରାଣ | ବଳରାମ ଦାସ |
| ୫୯) କାଂଚି କାବେରୀ | ଅଜଣା |
| ୬୦) ବ୍ରଜ ବିହାରୀ | ଅଜଣା |
| ୬୧) ରଘୁନାଥ ବିଳାସ | ଧନଞ୍ଜୟ ଭଞ୍ଜ |
| ୬୨) କଥା କୌତୁକ | ଘନ ଭଞ୍ଜ |
| ୬୩) ଅମର କୋଷ ଟୀକା | ନାରାୟଣ ଭଞ୍ଜ |
| ୬୪) ଚିନ୍ତାମଣି | ଅଜଣା |
| ୬୫) ରସଲତା | ଅଜଣା |
| ୬୬) ଦର୍‌ହୀ ରସାମୃତ | ଅଜଣା |
| ୬୭) କପଟ ପାଶା | ଅଜଣା |
| ୬୮) ରସିକ ମଙ୍ଗଳ | ଅଜଣା |
| ୬୯) ଅଳଙ୍କାର ବୋଲି | ଦୀନକୃଷ୍ଣ ଦାସ |
| ୭୦) ନାବ କେଳି | ଅଜଣା |
| ୭୧) ଜୟମୁନି ଭାରତ (ଜୈମିନି ଭାରତ) | ନୀଳାମ୍ବର ଦାସ |
| ୭୨) ସାରଳା ସ୍ତୁତି | ରାମ ନାୟକ |
| ୭୩) ରୁଦ୍ର ସ୍ତୁତି | ନୀଳାମ୍ବର ଦାସ |
| ୭୪) ଧ୍ରୁବ ସ୍ତୁତି | ଜଗନ୍ନାଥ ଦାସ |
| ୭୫) ନାମ ରତ୍ନ ଗୀତା | କୃଷ୍ଣ ଦାସ |
| ୭୬) ଇତିହାସ ପୁରାଣ | ଜଗନ୍ନାଥ ଦାସ |
| ୭୭) ଦ୍ୱାଦଶୀ ମାହାତ୍ମ୍ୟ | ମାଧବ ଦାସ |
| ୭୮) ଚୈତନ୍ୟ ଚରିତାମୃତ | କ୍ରିଷ୍ଣା ଦାସ |
| ୭୯) ପ୍ରେମପଞ୍ଚାମୃତ | ବିଭୁ ପତି |
| ୮୦) ସାତଖଣ୍ଡିଆ | ଅଚ୍ୟୁତ ଦାସ |
| ୮୧) ଦାରୁ ବ୍ରାହ୍ମଣ | - |
| ୮୨) ଗୀତଗୋବିନ୍ଦ | ଧରଣୀଧର |

(ଇଣ୍ଡିଆନ ଆଣ୍ଟିକ୍ୱେରୀ - ମାର୍ଚ୍ଚ ୧, ୧୮୭୨, ପୃଷ୍ଠା - ୭୯-୮୦)



# କବିବର ରାଧାନାଥ ରାୟଙ୍କ ସହିତ ଜନ୍ ବୀମ୍ସଙ୍କର ବ୍ୟକ୍ତିଗତ ପତ୍ରାଳାପ

ସୌଜନ୍ୟ - ରାଧାନାଥ ଜୀବନୀ

୧୮୭୩ ସାଲରେ ବିସୂଚିକା ରୋଗରେ ରାଧାନାଥଙ୍କର ପିତୃବିୟୋଗ ହେଲା । ବାଲେଶ୍ୱର ଜିଲ୍ଲାର ତଦାନୀନ୍ତନ କଲେକ୍ଟର ବୀମ୍ସ ସାହେବ ଏହି ଉପଲକ୍ଷରେ ଗଭୀର ଶୋକତପ୍ତ ହୋଇ ସେହିଦିନ କଚେରି ବନ୍ଦ କରିଥିଲେ । ସତ୍କାରର ସମସ୍ତ ବ୍ୟବସ୍ଥା ବାଲେଶ୍ୱରର ରାଜା ଶ୍ୟାମାନନ୍ଦ, କୁମାର ବୈକୁଣ୍ଠନାଥ ପ୍ରଭୃତି କରିଥିଲେ । ବୀମ୍ସ ସାହେବ ସେଦିନ ସ୍ୱହସ୍ତରେ ରାଧାନାଥଙ୍କୁ ଯେଉଁ ପତ୍ର ଲେଖିଥିଲେ, ତାହାର ଅବିକଳ ପ୍ରତିଲିପି ଏଠାରେ ପ୍ରଦତ୍ତ ହେଲା ।

My dear Radhanath,

I am indeed deeply grieved at hearing the sad news of your father's death. He was an excellent official, very intelligent and active and always rendered me great assistance. I lost my own father many years ago but I have not yet ceased to grieve for him, and I can therefore deeply sympathize with you.

Come and see me as soon as you are able to appear in public. Although I cannot make any promise now about your uncles I need not assure you that I will do all in my power to assist you and your family in this deplorable juncture.

July 21st 1873

Your sincere friend
Sd/John Beames

### ଅନୁବାଦ

"ପ୍ରିୟ ରାଧାନାଥ,

ତୁମ୍ଭ ପିତାଙ୍କ ମୃତ୍ୟୁର ଶୋକାବହ ବାର୍ତ୍ତା ଶୁଣି ମୁଁ ବାସ୍ତବିକ ମର୍ମାହତ ହୋଇଅଛି, ସେ ଅତ୍ୟନ୍ତ ବିଚକ୍ଷଣ ଓ ପରିଶ୍ରମୀ ଉତ୍କୃଷ୍ଟ ରାଜକର୍ମଚାରୀ ଥିଲେ ଏବଂ ସର୍ବଦା ମୋତେ ବହୁ ସାହାଯ୍ୟ କରୁଥିଲେ । ମୁଁ ବହୁଦିନ ପୂର୍ବେ ମୋ ପିତାଙ୍କୁ ହରାଇଥିଲି, କିନ୍ତୁ ଆଜିଯାକେ

ସେ ଦୁଃଖ ମୋ ହୃଦୟରେ ଗାର ହୋଇ ରହିଛି । ଅତଏବ ମୁଁ ତୁମ ସଙ୍ଗେ ଗଭୀର ସମବେଦନା ଅନୁଭବ କରୁଅଛି । (ଶୁଦ୍ଧି ଶ୍ରାଦ୍ଧାଦିପରେ) ବାହାରକୁ ବାହାରିବା ମାତ୍ରେ ତୁମେ ଆସି ମୋ ସଙ୍ଗେ ଦେଖା କରିବ । ତୁମ ପିତୃବ୍ୟମାନଙ୍କ ସମ୍ବନ୍ଧେ ବର୍ତ୍ତମାନ ମୁଁ କିଛି ପ୍ରତିଶ୍ରୁତି ଦେଇପାରୁନାହିଁ । କିନ୍ତୁ ମୁଁ ତୁମ୍ଭଙ୍କୁ ବଚନ ଦେଉଛି ଯେ, ଏ ଶୋକାବହ ପରିସ୍ଥିତିରେ ମୁଁ ତୁମ୍ଭଙ୍କୁ ଓ ତୁମ୍ଭ ପରିବାରକୁ ଯଥାଶକ୍ତି ସାହାଯ୍ୟ କରିବାରେ କୁଣ୍ଠିତ ହେବିନାହିଁ ।

ତୁମ୍ଭର ସହୃଦୟ ବନ୍ଧୁ

(ସ୍ୱାକ୍ଷର) ଜନ୍ ବୀମ୍‌ସ''

ପରେ ବାଲେଶ୍ୱରର ଉଦାର ହୃଦୟ ମାଜିଷ୍ଟ୍ରେଟ୍ ବୀମ୍‌ସ ସାହେବ ରାଧାନାଥଙ୍କ ମଧ୍ୟମ ଖୁଲ୍ଲତାତ ୰ ବଳରାମ ପ୍ରସାଦ ରାୟ ଏବଂ କନିଷ୍ଠ ଖୁଲ୍ଲତାତ ୰ ରମାନାଥ ରାୟଙ୍କୁ ଭିନ୍ନଭିନ୍ନ ରାଜକର୍ମରେ ନିଯୁକ୍ତ କରିଥିଲେ ।

Extract from the Annual Educational Report of the Magistrate of Balasore for the year 1872-73:

"The Deputy Inspector's intelligence, industry and devotion to his work deserve the highest praise".

Sd/- John Beames,
Magistrate

## ଅନୁବାଦ

ବାଲେଶ୍ୱର ଜିଲ୍ଲା ମାଜିଷ୍ଟ୍ରେଟଙ୍କ ୧୮୭୨-୭୩ ମସିହା ବାର୍ଷିକ ଏଡୁକେଶନାଲ୍ ରିପୋର୍ଟର କ୍ରିୟଦଂଶ -

''ଡେପୁଟି ଇନ୍‌ସପେକ୍ଟରଙ୍କ ବୁଦ୍ଧିମତ୍ତା, ଅଧ୍ୟବସାୟ ଓ କର୍ତ୍ତବ୍ୟନିଷ୍ଠା ଅତ୍ୟନ୍ତ ପ୍ରଶଂସାର୍ହ ।''

Extracts from the Magistrate's remarks in the Service Book of Radhanath Rai, Deputy Inspector of Schools.

A very intelligent, active and conscientious young man, thoroughly qualified for his duties.

Sd/- John Beames,
Magistrate
23rd June, 1874

### ଅନୁବାଦ

ଡେପୁଟି ଇନ୍‌ପେକ୍ଟର ବାବୁ ରାଧାନାଥ ରାୟଙ୍କ ସର୍ଭିସ ବୁକ୍‌ରେ ଦିଆହୋଇଥିବା ମନ୍ତବ୍ୟର କିୟଦଂଶ: -

''ନିଜ କର୍ତ୍ତବ୍ୟଭାର ବହନ କରିବାକୁ ପୂର୍ଣ୍ଣ ଉପଯୁକ୍ତ ଜଣେ ବୁଦ୍ଧିମାନ୍, କର୍ମଠ ଓ ସୁବିବେକୀ ଯୁବକ ।''

୨୪-୬-୧୮୭୪ ଜନ୍ ବୀମ୍‌ସ
ମାଜିଷ୍ଟ୍ରେଟ୍

## REPORT ABOUT RADHANATH RAY

Baboo Radhanath Rai has been the Deputy Inspector of schools in this District for two years . He is very intelligent and active and possesses great judgement and discretion consider him a very trustworthy and deserving officer.

Sd/- John Beames,
Offg Commissioner of Orissa

CAMP BALASORE
22nd October 1873

### ଅନୁବାଦ

ଦୁଇ ବର୍ଷ ହେଲା ବାବୁ ରାଧାନାଥ ରାୟ ଏ ଜିଲ୍ଲାର ଡେପୁଟି ଇନ୍‌ସପେକ୍ଟର ହୋଇଅଛନ୍ତି । ସେ ଅତ୍ୟନ୍ତ ବୁଦ୍ଧିମାନ୍ ଓ କର୍ମଠ ଏବଂ ତାଙ୍କର ଯଥେଷ୍ଟ ବିଚାରଶକ୍ତି ଓ ସୁବିବେଚକତା ଅଛି । ମୁଁ ତାଙ୍କୁ ଅତ୍ୟନ୍ତ ବିଶ୍ୱାସୀ ଓ ଉନ୍ନତି ଲାଭ କରିବାର ଯୋଗ୍ୟ ବ୍ୟକ୍ତି ବୋଲି ଜ୍ଞାନ କରେଁ ।

ବାଲେଶ୍ୱର କ୍ୟାମ୍ପ୍ ଜନ୍ ବୀମ୍‌ସ
୨୨-୧୦-୧୮୭୩ ଓଡ଼ିଶାର ଅସ୍ଥାୟୀ କମିସନର

ରଧାନାଥଙ୍କ ପ୍ରତି ଜନ୍ ବୀମ୍‌ସ ସାହେବଙ୍କର କିରୂପ ସ୍ନେହଦୃଷ୍ଟି ଏବଂ ସୌହାର୍ଦ୍ଦ୍ୟ ଥିଲା, ତାହା ନିମ୍ନରେ ପ୍ରଦର୍ଶିତ କେତେ ଖଣ୍ଡ ପତ୍ରରୁ ସ୍ପଷ୍ଟୀକୃତ ହେବ : -

My dear Radhnath,

I will endeavour to have you put on the Cuttack Committee of Examination. As to your uncle, I cannot make any promise beyond this, that I will bear him in mind when any occasion offers.

Yours truly
Sd/- John Beames,
2.8.73

### ଅନୁବାଦ

ପ୍ରିୟ ରାଧାନାଥ,

କଟକ ପରୀକ୍ଷକ ସଭାରେ ତୁମ୍ଭଙ୍କୁ ରଖିବାକୁ ମୁଁ ଅବଶ୍ୟ ଯତ୍ନ କରିବି । ତୁମ୍ଭ ପିତୃବ୍ୟଙ୍କ କଥା ସବୁବେଳେ ମନେରଖି ସୁବିଧା ହେଲେ ତାଙ୍କ ପାଇଁ କିଛି କରିବି, ଏହାଛଡ଼ା ମୁଁ ଆଉ କିଛି ବଚନ ଦେଇ ପାରୁ ନାହିଁ । ଇତି ।

ତୁମ୍ଭର
ଜନ୍ ବୀମ୍‌ସ
୨/୮/୭୩

My dear Radhanath,

I have written to Mr. Norman today to consult with Mr. Ager about the additional Sub-Deputy as I shall be glad to give you . I think Mr. Ager will find Balasore far ahead of the other districts. Things are in a great muddle here and I am obliged to be both Commission and Collector atonce; so I have very little time.

I will write to Mr. Norman to give your uncle the post vacated by Gobind Chandra Pattnaik.

I hope you are all prospering.I shall visit Balasore in October and hope to see you then.

Cuttack
September, 2,1873

Yours sincerely
Sd/- John Beames

### ଅନୁବାଦ

ପ୍ରିୟ ରାଧାନାଥ,

ଅତିରିକ୍ତ ସବ୍‌ଡେପୁଟି ଚାକିରି ବିଷୟରେ ଏଜର ସାହେବଙ୍କ ସହିତ ପରାମର୍ଶ କରିବାକୁ ମୁଁ ଆଜି ନର୍ମାନ୍ ସାହେବଙ୍କ ପାଖକୁ ଲେଖିଲି । ଅନ୍ୟାନ୍ୟ ଜିଲ୍ଲାମାନଙ୍କ ଅପେକ୍ଷା ବାଲେଶ୍ୱର ଯେ ଖୁବ୍ ଆଗେଇଛି, ଏହା ଏଜର ସାହେବ ଲକ୍ଷ୍ୟ କରିପାରିବେ । ଏଠାରେ ଅବସ୍ଥା ବଡ଼ ଗୋଳମାଳିଆ, ତେଣୁ ମୋତେ ବାଧ୍ୟ ହୋଇ କଲେକ୍ଟର ଓ କମିସନର, ଉଭୟ ହେବାକୁ ପଡୁଅଛି । ମୋତେ ଖୁବ୍ ଅଳ୍ପ ଫୁରସତ୍ ମିଳୁଅଛି ।

ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ ଯେଉଁ ଚାକିରି ଛାଡ଼ି ଚାଲିଯାଇଅଛନ୍ତି, ତାଙ୍କୁ ତୁମ୍ଭ ପିତୃବ୍ୟଙ୍କୁ ଦେବାକୁ ମୁଁ ନର୍ମାନ୍ ସାହେବଙ୍କ ପାଖକୁ ଲେଖିବି ।

ଆଶା କରେଁ, ତୁମ୍ଭମାନଙ୍କର ସମସ୍ତ ମଙ୍ଗଳ । ଅକ୍ଟୋବର ମାସରେ ମୁଁ ବାଲେଶ୍ୱର ଯାଉଛି । ସେଠାରେ ତୁମ୍ଭ ସହିତ ଦେଖା ହେବ ।

କଟକ
ସେପ୍ଟମ୍ବର ୨, ୧୮୭୩

ତୁମ୍ଭର
ଜନ୍ ବୀମ୍ସ

Chinsurah
14th April

My dear Radhanath,

It would give me great pleasure to assist you, if it were in my powers. As far as I can learn however either Mr. Garrett or Mr. Clarke will be appointed in Bhudev Baboo's place; and I do not hear of any proposal to act upon the Hindoo Patriot's suggestions, though I think it would be a good thing to make the Orissa Joint Inspector into an Inspector. I have not been much consulted about educational matters of late; and I hardly like to intrude in any way in the management of that department, at least till I have had an opportunity of discussing the subject with Bhudev Baboo's successor.

Yours sincerely
Sd/- John Beames

## ଅନୁବାଦ

ଚୁଞ୍ଚୁଡ଼ା
୧୪ ତାରିଖ ଅପ୍ରେଲ୍

ପ୍ରିୟ ରାଧାନାଥ,

ମୋ ହାତରେ ଯେତେଦୂର ହୋଇପାରେ, ତୁମ୍ଭଙ୍କୁ ସାହାଯ୍ୟ କରିପାରିଲେ ମୁଁ ସୁଖୀ ହେବି । ମୁଁ ଯାହା ଶୁଣୁଛି, ତହିଁରେ ଭୂଦେବବାବୁଙ୍କ ସ୍ଥାନରେ ମିଷ୍ଟର ଗାରେଟ୍ ବା କ୍ଲାର୍କ, ଏ ଦୁହିଁଙ୍କ ଯେ ହେଲେ ଜଣେ ନିଯୁକ୍ତ ହେବେ । ହିନ୍ଦୁ ପେଟ୍ରିୟଟ୍ କାଗଜର ସୂଚନାନୁଯାୟୀ କାର୍ଯ୍ୟ କରିବା ନିମନ୍ତେ କୌଣସି ପ୍ରସ୍ତାବ ମୋ କର୍ଣ୍ଣଗୋଚର ହୋଇନାହିଁ । ତେବେ ଓଡ଼ିଶାର ଜଏଣ୍ଟ ଇନ୍‌ସ୍ପେକ୍ଟର ପଦ ଇନସ୍ପେକ୍ଟର ପଦରେ ପରିଣତ ହେଲେ ଖୁବ୍ ଭଲ ହୁଅନ୍ତା । ଶିକ୍ଷା ବିଭାଗ ବିଷୟରେ ମୋତେ ଏବେ ସେତେ କିଛି ପଚରା ଯାଏ ନାହିଁ ; ତେଣୁ ଭୂଦେବବାବୁଙ୍କ ସ୍ଥାନରେ ଯେ ଆସୁଅଛନ୍ତି, ତାଙ୍କ ସହିତ ଆଲୋଚନା ନ କରିବାଯାକେ ମୁଁ ସେ ବିଭାଗର ପରିଚାଳନାରେ ହସ୍ତକ୍ଷେପ କରିବାକୁ ଅନିଚ୍ଛୁକ । ଇତି ।

ତୁମ୍ଭର
ଜନ୍ ବୀମ୍ସ

Chinsurah
10th July

My dear Radhanath,

I was glad to see your handwriting again, and it will give me great pleasure to see you whenever you like to come. I have been through a time of much anxiety and trouble, but I hope that is now over and that I may have some peace now. It does not seem likely from all that I hear, that Mr. Ravenshaw will ever be able to return to India, as his health is completely shattered and at his advance age there is no hope of his being fit for hard work again.

I hear that he is taking a house in England and preparing to settle there. It is therefore probable that I may be made Pucka here next November when his leave expires. But I shall not know for certain till then. I like this place very well and should be quite contented to stay here for a long time ; and I need not say that it would give me much pleasure to have you serving under me again.

With kind regards to all old friends

Yours sincerely
Sd/- John Beames

## ଅନୁବାଦ

ଚୁଞ୍ଚୁଡ଼ା
୧୦ ତାରିଖ ଜୁଲାଇ

ପ୍ରିୟ ରାଧାନାଥ,

ତୁମ୍ଭ ହସ୍ତଲିପି ପୁନର୍ବାର ଦେଖି ମୁଁ ଆନନ୍ଦିତ ହେଲି । ତୁମ୍ଭେ ଯେ କୌଣସି ସମୟରେ ଏଠାକୁ ଆସିଲେ ମୋର ଅପାର ଆନନ୍ଦ ହେବ । ବହୁ ଚିନ୍ତା ଓ ଉଦ୍‌ବେଗରେ ମୋତେ କେତେ ଦିନ ବିତାଇବାକୁ ପଡ଼ିଅଛି, କିନ୍ତୁ ବର୍ତ୍ତମାନ ସେ ସବୁ ଅପସାରିତ ହୋଇଥିବାରୁ କଥଞ୍ଚିତ୍ ଶାନ୍ତି ଉପଭୋଗ କରିପାରିବି । ମୁଁ ଯାହା ଶୁଣୁଛି, ତହିଁରୁ ଜାଣୁଛି ଯେ, ରେଭେନ୍‌ସା ସାହେବ ପୁଣି ଭାରତକୁ ଫେରି ଆସିବା ଆଦୌ ସମ୍ଭବ ନୁହେଁ । ତାଙ୍କ ସ୍ୱାସ୍ଥ୍ୟ ଏକାବେଳେ ବିଗିଡ଼ି ଯାଇଅଛି । ଏ ଉରର ବୟସରେ କଠିନ କର୍ତ୍ତବ୍ୟ ସାଧନ କରିବା ନିମନ୍ତେ ତାଙ୍କର ଯେ ଆଉ ଶକ୍ତି ହେବ, ଏ ଆଶା ନାହିଁ ।

ମୁଁ ଶୁଣୁଛି, ଇଂଲଣ୍ଡରେ ସେ ଗୋଟିଏ ଘର ନେଇ ତହିଁରେ ବାସ କରିବାକୁ ସ୍ଥିର କରିଛନ୍ତି । ତେଣୁ ଆର ନଭେମ୍ବର ମାସରେ ତାଙ୍କ ଛୁଟି ଶେଷରେ ମୁଁ ଏଠାରେ

ସ୍ଥାୟୀ ହୋଇ ପାରେ ; କିନ୍ତୁ ସେ ପର୍ଯ୍ୟନ୍ତ ଏ କଥାର ସ୍ଥିରତା ମୁଁ ଜାଣି ପାରିବି ନାହିଁ । ଏ ସ୍ଥାନ ମୋତେ ଖୁବ୍ ଭଲ ଲାଗୁଅଛି ଏବଂ ଏଠାରେ ବେଶି ସମୟ ମୁଁ ସନ୍ତୋଷ ସହିତ ରହି ପାରିବି । ତୁମ୍ଭଙ୍କୁ ମୋର ଅଧସ୍ତନ କର୍ମଚାରୀ କରି ପୁଣି ପାଇଲେ ମୁଁ ପରମ ପରିତୋଷ ଲାଭ କରିବି ।

ସମସ୍ତ ପୁରାତନ ବନ୍ଧୁମାନଙ୍କୁ ମୋର ସଶ୍ରଦ୍ଧ ଅଭିବାଦନ ।

ତୁମ୍ଭର
ଜନ୍ ବୀମ୍ସ

Hooghly
June 1st

My dear Radhanath,

If they offer me Orissa, I shall of course take it; but it has not been offered me yet; and do not know what the Government may intend.I am much obliged to you for the interest you take in my welfare.

Yours sincerely
Sd/- John Beames

**ଅନୁବାଦ**

ହୁଗୁଳି
ଜୁନ୍ -୧

ପ୍ରିୟ ରାଧାନାଥ,

ସେମାନେ ମୋତେ ଯଦି ଓଡ଼ିଆ ଦିଅନ୍ତି, ମୁଁ ଅବଶ୍ୟ ତାହା ଗ୍ରହଣ କରିବି । କିନ୍ତୁ ଏ ପର୍ଯ୍ୟନ୍ତ ତ ତାହା ମୋତେ ଯଚା ହୋଇନାହିଁ । ସରକାରଙ୍କ ଇଚ୍ଛା କଅଣ, ତାହା ମଧ ମୁଁ ଜାଣେ ନାହିଁ । ମୋ ଭଲମନ୍ଦର ତତ୍ତ୍ୱ ନେଉଥିବାରୁ ମୁଁ ତୁମ୍ଭଠାରେ ବାଧିତ ।

ତୁମ୍ଭର
ଜନ୍ ବୀମ୍ସ

Chittagong
October 10th

My dear Radhanath,

It was a great blow to me to leave Orissa, and a still greater one when I found that I was not allowed to return there on

Mr. Ravenshaw's transfer. Some one I know not, who told Sir A. Eden on the occasion of his visit to Cuttack that I was very unpopular in Orissa; and that is I suppose the reason why I am not allowed to return to that place. I dislike Chittagong extremely. I have never been in so bad a place in my life.I am always sick here.I have no society, and the natives are detestable people-the lowest class of Bengali Musalman's -full of treachery and litigiousness. I shall never cease to take a deep and sincere interest in all that concerns Orissa; and I shall always try to get back there. Some day perhaps I may be successful. At present I am sick both in body and spirit and date not look forward to any further success or happiness in this world. Should I ever again come into favour and be able to see you or any of my old friends, I shall gladly do so. At present I am, so to speak "bhrastra". I am sorry Kailas has behaved to badly. I was thinking of getting him a berth here, but I cannot of course do so now.

Please remember me to all my frineds in Orissa.

Yours sincerely
Sd/- John Beames

## ଅନୁବାଦ

ଚଟ୍ଟଗ୍ରାମ
ଅକ୍ଟୋବର ୧୦ ତାରିଖ

ପ୍ରିୟ ରାଧାନାଥ,

ଓଡ଼ିଶା ଛାଡ଼ି ମୁଁ ଦାରୁଣ ଆଘାତ ପାଇଅଛି । ରେଭେନସା ସାହେବଙ୍କ ବଦଳି ପରେ ଓଡ଼ିଶାକୁ ଫେରି ନ ଯାଇ ପାରିବାରୁ ପୁଣି ମୁଁ ଦାରୁଣତର ଆଘାତ ପାଇଲି । ସର୍ ଏ. ଏଡ଼େନ୍ କଟକ ଯାଇଥିବା ସମୟରେ, ମୁଁ ଜାଣେ ନାହିଁ କିଏ, କିନ୍ତୁ କେହି ଜଣେ ତାଙ୍କୁ କହିଛି ଯେ, ଓଡ଼ିଶାରେ ଲୋକଙ୍କଠାରେ ମୁଁ ଖୁବ୍ ଅପ୍ରିୟ । ବୋଧହୁଏ ସେହି ହେତୁରୁ ଓଡ଼ିଶାକୁ ଫେରିବାକୁ ମୋତେ ଛଡ଼ା ହେଲା ନାହିଁ । ଚଟ୍ଟଗ୍ରାମକୁ ମୁଁ ତୀବ୍ରଭାବରେ ଘୃଣା କରେ । ଏଡ଼େ ଖରାପ ଜାଗାରେ ମୋ ଜୀବନରେ ମୁଁ କେବେ ରହି ନାହିଁ । ଏଠାରେ ମୁଁ ସର୍ବଦା ଛଟପଟ ହେଉଅଛି । ମୋର ସାଙ୍ଗସାଥୀ ଏଠାରେ କେହି ନାହିଁ - ଏଠା ବାସିନ୍ଦାଗୁଡ଼ାକ ନିମ୍ନସ୍ତରର, ଅବିଶ୍ୱାସୀ ଓ ମକଦ୍ଦମାବାଜ୍ ବଙ୍ଗାଳୀ ମୁସଲମାନ । ଓଡ଼ିଶାବିଷୟକ ସମସ୍ତ କଥାର ଖବର ମୁଁ ଗଭୀର ଆନ୍ତରିକତା ସହିତ ନେଇଥାଏଁ ଏବଂ ସେଠାକୁ ଫେରିଯିବା ନିମନ୍ତେ ମୁଁ ସର୍ବଦା ଚେଷ୍ଟିତ ରହିବି । ଦିନେ ମୋର ଚେଷ୍ଟା ସଫଳ

ହୋଇପାରେ । ବର୍ତ୍ତମାନ ଦେହ ଓ ମନ, ଉଭୟତଃ ମୁଁ ଛଟପଟ ହେଉଅଛି । ଏ ସଂସାରରେ ଆଉ ସୁଖ ଓ କୃତକାର୍ଯ୍ୟତା ଲାଭ କରିବି ବୋଲି ସାହସ ସହିତ ଆଶା ବାନ୍ଧିପାରୁନାହିଁ । ଯଦି କେବେ ପୁଣି କର୍ତ୍ତୃପକ୍ଷଙ୍କ କୃପାଲାଭ କରେ ଓ ତୁମେ ଓ ତୁମ୍ଭତୁଲ୍ୟ ପୁରାତନ ବନ୍ଧୁଙ୍କ ଭିତରୁ କାହାକୁ ଦେଖି ପାରେ, ତେବେ ମୁଁ ଯଥେଷ୍ଟ ଆନନ୍ଦିତ ହେବି । କହିବାକୁ ଗଲେ ମୁଁ ବର୍ତ୍ତମାନ "ଭ୍ରଷ୍ଟ" । କୌଳାସ ଏତାଦୃଶ ମନ୍ଦ ବ୍ୟବହାର କରିଥିବାରୁ ମୁଁ ଦୁଃଖିତ । ତାକୁ ଏଠାରେ ଖଣ୍ଡେ ଚାକିରି ଦେବାକୁ ମୁଁ ଭାବୁଥିଲି, କିନ୍ତୁ ବର୍ତ୍ତମାନ ତାହା କରି ପାରିବି ନାହିଁ ।

ଓଡ଼ିଶାରେ ସମସ୍ତ ବନ୍ଧୁଙ୍କ ମନରେ ମୋ କଥା ପକାଇବ ।

ତୁମ୍ଭର
ଜନ୍ ବୀମ୍ସ

Chittagong
May 2nd, 1879

My dear Radhanath,

I am very glad to hear from you. Here there are no native gentlemen except the Deputy Collectors and none of the Zamindars even call upon the European officials. On the countrary they are always brining civil suits against them. I do not think that even my name is known to any of the people here. I am afraid that I shall not return to Orissa unless it be as Collector. I shall never obtain any more promotion or success. I fear, as long as Sir A. Eden remains.If I do not succeed better, I shall resign the service in four years time, when my service is completed, and go home. There is no use in doing good work under the present Government. Just at the time when I thought I had obtained a good reputation, I found myself superseded by inferior men and passed over. I have now nothing to hope for except from God's Mercy.

I am always glad to turn my thoughts to the happy days I spent in dear Orissa and look back with much pleasure to the kind and amiable people of that Province. I wish you all the success which I have lost.

Yours sincerely
Sd/- John Beames

## ଅନୁବାଦ

ଚଟ୍ଟଗ୍ରାମ

ମେ ୨ / ୧୮୭୯

ପ୍ରିୟ ରାଧାନାଥ,

ତୁମ୍ଭ ଚିଠି ପାଇଁ ମୁଁ ଅତ୍ୟନ୍ତ ଆନନ୍ଦିତ ହେଲି । ଏଠାରେ ଡେପୁଟି କଲେକ୍ଟରମାନଙ୍କୁ ଛାଡ଼ିଦେଲେ ଦେଶୀ ଲୋକ କେହି ନାହିଁ । ଜମିଦାରମାନେ ଗୋରା ହାକିମମାନଙ୍କୁ କେବେ ହେଲେ ମୁଲାକାତ୍ କରନ୍ତି ନାହିଁ ; ବରଂ ସେମାନଙ୍କ ନାମରେ ଅଦାଲତରେ ଦେୱାନୀ ମକଦ୍ଦମା କରନ୍ତି । ମୋ ନାଆଁ ଏଠାରେ କେହି ଜାଣନ୍ତି ବୋଲି ଜଣାଯାଉନାହିଁ । କଲେକ୍ଟର ପଦରେ ମୁଁ ଓଡ଼ିଶାକୁ ଫେରିଲେ ଫେରିପାରେଁ । ସର୍ ଏ. ଏଡ଼େନ ଥିବାତକ ଚାକିରିରେ ଉଚ୍ଚତର ପ୍ରାହ୍ୟାକୁ ଉନ୍ନତି ବା କୃତକାର୍ଯ୍ୟତା ମୁଁ ଆଉ ଲାଭ କରି ପାରିବି ନାହିଁ । ଯଦି ମୋର କିଛି ଉନ୍ନତି ନ ହୁଏ ; ତେବେ ଚାରିବର୍ଷ ପରେ ଚାକିରି ଇସ୍ତଫା ଦେଇ ଘରକୁ ବାହାରି ଯିବି ; ସେତେବେଳକୁ ମୋର କାର୍ଯ୍ୟକାଳ ମଧ ସରିଯାଇଥିବ । ବର୍ତ୍ତମାନର ସରକାରଙ୍କ ଅଧୀନତାରେ ଭଲ କାମ କରି କିଛି ଫଳ ନାହିଁ । ଯେତେବେଳେ ମୋର ଟିକିଏ ସୁନାମ ହୋଇ ଆସୁଥିବା ମୁଁ ବୋଧକଲି, ଠିକ୍ ସେତିକିବେଳକୁ କମ୍‌ଯୋଗ୍ୟତାବିଶିଷ୍ଟ ଲୋକକୁ ମୋ ଉପରକୁ ଉଠାଇ ଦିଆଗଲା ଓ କଥା ବାଏଁ ବାଏଁ ଉଡ଼ିଗଲା । ଏଣିକି ଜଗଦୀଶଙ୍କ କରୁଣା ଛଡ଼ା ଅନ୍ୟ କୌଣସିଥିରୁ ମୋର କିଛି ଆଶ କରିବା ବୃଥା ।

ଓଡ଼ିଶାରେ କଟାଇଥିବା ପ୍ରିୟ ପୁରାତନ ସୁଖମୟ ଦିନଗୁଡ଼ିକ ପ୍ରତି ମୁଁ ମୋର ଚିନ୍ତା ଫେରାଇ ସର୍ବଦା ସୁଖୀ ହୋଇଥାଏ ଓ ସେ ପ୍ରଦେଶର ଦୟାଳୁ ବନ୍ଧୁଭାବାପନ୍ନ ଲୋକଙ୍କ କଥା ଭାବି ଆନନ୍ଦ ଲାଭ କରଥାଏଁ ।

ମୁଁ ଯେଉଁ କୃତକାର୍ଯ୍ୟତା ନିଜେ ହରାଇଅଛି, ସେ କୃତକାର୍ଯ୍ୟତା ତୁମ୍ଭେ ଜୀବନରେ ଲାଭ କର ଏହାହି ମୋର କାମନା । । ଇତି ।

ତୁମ୍ଭର

**ଜନ୍ ବୀମ୍‌ସ**



# ଓଡ଼ିଆ ଭାଷାର ପରମ ହିତାକାଙ୍କ୍ଷୀ ଜନ୍ ବୀମ୍ସ

ଡକ୍ଟର ଶ୍ରୀ ନିବାସ ମିଶ୍ର

ପକ୍ଷପାତିତା ଜଡ଼ିତ ଏକଦେଶଦର୍ଶୀ ଏଭଳି ମନ୍ତବ୍ୟ ପ୍ରକାଶିତ ହେଉଥିଲାବେଳେ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଉଦାରଚେତା ବୀମ୍ସ ସାହେବଙ୍କ ଅନୁରକ୍ତି ଓ ସହାନୁଭୂତି ବିସ୍ମୟକର । ବାଲେଶ୍ୱର ହାଇସ୍କୁଲର ବଙ୍ଗୀୟ ପଣ୍ଡିତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ 'ଉଡ଼ିୟା ସ୍ୱତନ୍ତ୍ର ଭାଷାନୟ' ପୁସ୍ତକକୁ କେନ୍ଦ୍ର କରି ପ୍ରସିଦ୍ଧ ଭାଷାତତ୍ତ୍ୱବିତ୍, ପ୍ରତ୍ନତତ୍ତ୍ୱବିତ୍ ଜନ୍ ବୀମ୍ସ ଓ ରାଜେନ୍ଦ୍ରଲାଲ ମିତ୍ରଙ୍କ ମଧ୍ୟରେ ପାଣ୍ଡିତ୍ୟପୂର୍ଣ୍ଣ ଯୁକ୍ତିର ଖଣ୍ଡନମଣ୍ଡନ ସାହିତ୍ୟ ଇତିହାସରେ ଗୁରୁତ୍ୱପୂର୍ଣ୍ଣ । ଏହି ବାଦାନୁବାଦ ବୌଦ୍ଧିକ ସ୍ତରରେ ସୀମିତ । ରଏଲ ଏସିଆଟିକ୍ ସୋସାଇଟିର ଏକ ଅଧିବେଶନରେ (୪/୫/୧୮୭୦) ଜନ୍ ବୀମ୍ସ 'On the relation of Oriya to the Other Modern Aryan Languages' ଶୀର୍ଷକ ଦୀର୍ଘ ପ୍ରବନ୍ଧ ପଢ଼ିଥିଲେ । ୧ । ଏଥିରେ କାନ୍ତିଚନ୍ଦ୍ରଙ୍କ ପୁସ୍ତକକୁ 'ଭାଷାତାତ୍ତ୍ୱିକ ଯୁକ୍ତି ବିରହିତ' କହି ବୀମ୍ସଙ୍କ ଦ୍ୱାରା ଓଡ଼ିଆ ଭାଷାର ପ୍ରାଚୀନତା, ସ୍ୱାତନ୍ତ୍ୟ ଓ ଉତ୍କର୍ଷ ପ୍ରମାଣିତ । ଓଡ଼ିଆ ଭାଷା ପ୍ରତି ସମଧିକ ମମତା ଅନ୍ୟତ୍ର ତାଙ୍କ ପ୍ରାମାଣ୍ୟ ଗ୍ରନ୍ଥରେ ପ୍ରକାଶିତ । ଓଡ଼ିଆ ବଙ୍ଗଳାର ଉପଭାଷା, ଜନସଂଖ୍ୟାର ଅଳ୍ପତା ବିଚାରରେ ଏହାର ସ୍ୱତନ୍ତ୍ର ସାହିତ୍ୟ ସୃଷ୍ଟି ଅସମ୍ଭବ ଏ ମତ ତାଙ୍କ ଦ୍ୱାରା ଅଗ୍ରାହ୍ୟ । 'ଲକ୍ଷ ଲକ୍ଷ ଲୋକଙ୍କ ମାତୃଭାଷା ଓଡ଼ିଆକୁ ଲୋପ କରିବା ଓଡ଼ିଶାବାସୀ କେତେକ ବଙ୍ଗୀୟ ଓ ଇଂରେଜ ବ୍ୟକ୍ତିଙ୍କ ଶକ୍ତି ଅତୀତ । ଏ ଭାଷା ବିଲୋପ ନିମନ୍ତେ କୌଣସି ସବଳ ପ୍ରୟାସୀ ଇଂରାଜୀଶାସନ ମୂଳ ନୀତିର ପରିପନ୍ଥୀ । ଏହା ବୀମ୍ସଙ୍କ ଦୃଢ଼ ସତର୍କ ବାଣୀ । ୨ । ଓଡ଼ିଆ ଭାଷାର ଆପେକ୍ଷିକ ଉତ୍କର୍ଷ ପ୍ରତିପାଦନ ନିମନ୍ତେ ତାଙ୍କ ଯୁକ୍ତି ହେଲା, ଏହା ସ୍ଥିର

1. Proceedings of the Aciatic Society of Bengal (1870)
 – P, 192-201
2. A Comparative Grammar of the Modern Aryan Languages of India – John Beames – Vol. I.P. 117-118.

ନିର୍ଦ୍ଦିଷ୍ଟ ରୂପ ଧାରଣ କରିଥିବାବେଳେ ବଙ୍ଗଳା ଭାଷାର ଅସ୍ତିତ୍ୱ ନଥିଲା ବଙ୍ଗର ଅଧିବାସୀମାନେ ପୂର୍ବ ହିନ୍ଦୀର ଅପଭ୍ରଷ୍ଟ ଶବ୍ଦାବଳୀ ବହୁ ପରିମାଣରେ ବ୍ୟବହାର କରୁଥିଲେ । ଆଧୁନିକ ଓଡ଼ିଆ ଗଦ୍ୟର ରଚନାରେ ମୌଳିକତାର ଅଭାବ, ଉତ୍ତମ ଲେଖକ ହେବା ନିମନ୍ତେ ସାଧନା ବିମୁଖତା, ଦେଶୀୟ ସାହିତ୍ୟ ପ୍ରତି ଅନାଗ୍ରହ, ମାତୃଭାଷାର ଶୁଦ୍ଧତା ପ୍ରତି ଓଡ଼ିଆମାନଙ୍କ ପରାଙ୍‌ମୁଖତା ବୀମ୍‌ସଙ୍କ ଦୁଃଖର କାରଣ ।

## ଜନ୍ ବୀମ୍‌ସଙ୍କ ସମାଲୋଚନା : ଓଡ଼ିଆ କାବ୍ୟ ସାହିତ୍ୟର ବିଶ୍ଳେଷଣ

ଓଡ଼ିଆ ସାହିତ୍ୟର ବିଧିବଦ୍ଧ ଆଲୋଚନା କ୍ଷେତ୍ରରେ ବୀମ୍‌ସଙ୍କ କୃତିତ୍ୱ ବିଶେଷ ଉଲ୍ଲେଖଯୋଗ୍ୟ । ଓଡ଼ିଶାର ଦେଶୀୟ ସାହିତ୍ୟ, ରସକଲ୍ଲୋଳ ସମ୍ପର୍କରେ ଅଭିମତ, ଓଡ଼ିଶାର ଲୋକସାହିତ୍ୟ ସମ୍ପର୍କରେ ତିନୋଟି ବିଶ୍ଳେଷଣାତ୍ମକ ତଥ୍ୟନିଷ୍ଠ ଆଲୋଚନା ଲେଖି ଓଡ଼ିଆ ସାହିତ୍ୟ ସମୀକ୍ଷା ପ୍ରତି ସେ ସୁଧୀସମାଜର ଦୃଷ୍ଟି ଆକର୍ଷଣ କରିଥିଲେ ।୩। ପ୍ରଥମ ରଚନାରେ ଓଡ଼ିଆ ଭାଷାରେ ଶବ୍ଦ ଓ ଗଠନ ରୀତିର ଅକ୍ଷୁର୍ଣ୍ଣତା, ଉପେନ୍ଦ୍ରଭଞ୍ଜଙ୍କ ତିରିଶ ଖଣ୍ଡ କାବ୍ୟ ସମେତ ବୟାଅଶୀ ଖଣ୍ଡ ଓଡ଼ିଆ କାବ୍ୟ ଉଲ୍ଲିଖିତ । ଏହି ତାଲିକାରେ ସ୍ଥଳେ ସ୍ଥଳେ ଭ୍ରାନ୍ତି ପରିଲକ୍ଷିତ । ଧନଞ୍ଜୟ ଭଞ୍ଜଙ୍କ ଅନଙ୍ଗରେଖାକୁ ସେ ଦୀନକୃଷ୍ଣଙ୍କର ଓ ଭକ୍ତଚରଣଙ୍କ ମଥୁରା ମଙ୍ଗଳକୁ ବଳରାମ ଦାସଙ୍କ ରଚନାଭାବେ ଉଲ୍ଲେଖ କରିଛନ୍ତି । ରସକଲ୍ଲୋଳ କାବ୍ୟରଚନାର ପରିବେଶ, ଦୀନକୃଷ୍ଣଙ୍କ ପରିଚୟ, କାଳନିରୂପଣ ପରେ ଆଲୋଚକଙ୍କ ଦ୍ୱାରା ଭାବ୍ୟର ଭାଷା ଓ ଛନ୍ଦ ସଂଯୋଜନା ପ୍ରଶଂସିତ । ଓଡ଼ିଶାର ଲୋକ-ସାହିତ୍ୟ ସମ୍ପର୍କରେ ତାଙ୍କ ଆଲୋଚନା ଚିତ୍ତାକର୍ଷକ । ଏହି ଆଲୋଚନାଗୁଡ଼ିକରେ ବୀମ୍‌ସଙ୍କ ତଥ୍ୟନିଷ୍ଠା ଓ ରସବୋଧ ସମନ୍ୱିତ ।

(ସୌଜନ୍ୟ - ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ)



3. Indian Antiquary – 1872 (କ) The Indigenous literature of Orissa (March, 1872), (ଖ) Folk-lore of Orissa (June & July, 1872) (ଗ) Notes on the Rasakallola (July & October, 1872)

# ଇତିହାସର ବିସ୍ମୃତ ସାଧକ

ଡକ୍ଟର ନଟବର ସାମନ୍ତରାୟ

ସଟନ୍ ସାହେବ ପ୍ରଥମେ ବଙ୍ଗଳା ଅଧ୍ୟୟନ କରି ଓଡ଼ିଆଭାଷା ଶିକ୍ଷା କରିଥିଲେ । ତାଙ୍କର ଅଧିକାଂଶ ଓଡ଼ିଆ ଲେଖା ବଙ୍ଗଳାରୁ ଅନୂଦିତ ; ଫଳରେ ତାଙ୍କ ପ୍ରବର୍ତ୍ତିତ ଓଡ଼ିଆ ଭାଷାରେ ବଙ୍ଗଳାଭାଷାର ପ୍ରଭାବ ପରିଲକ୍ଷିତ ହେବା ଏକାନ୍ତ ସ୍ୱାଭାବିକ । ଏଇ ବଙ୍ଗଭାଷାମିଶ୍ରିତ ଓଡ଼ିଆ ଭାଷା ଥିଲା ସେ ସମୟର ଶିକ୍ଷିତ ଲୋକଙ୍କ ଚକ୍ଷୁରେ ଏକମାତ୍ର ଶୁଦ୍ଧ ଓଡ଼ିଆ ଭାଷା । ଓଡ଼ିଆ ଭାଷା ଉପରେ ବଙ୍ଗଳାର ପ୍ରଭାବ ପରବର୍ତ୍ତୀ ସମୟରେ ଓଡ଼ିଆ ଭାଷା ଜୀବନରେ ଏକ ଘୋର ସଙ୍କଟ ସୃଷ୍ଟି କରିଥିଲା । ଏ ଭାଷାକୁ ଏ ସଙ୍କଟରୁ ଉଦ୍ଧାର କରିଥିଲେ ବାଲେଶ୍ୱର ଜିଲ୍ଲା କଲେକ୍ଟର ଜନ୍ ବିମ୍‌ସ୍ ।

୧୮୬୮ ସାଲ ଡିସେମ୍ବର ମାସରେ ପ୍ରଦତ୍ତ ରାଜେନ୍ଦ୍ରଲାଲ ମିତ୍ରଙ୍କ ଗୋଟିଏ ଅଭିଭାଷଣରୁ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ଉପରେ ଏକ ଆନ୍ଦୋଳନ ଦେଖା ଦେଇଥିଲା । ଏପରି ଆନ୍ଦୋଳନର ମୂଳସୂତ୍ରଟି, କିନ୍ତୁ ୧୮୪୦ ସାଲ ପରଠାରୁ ଆମେ ଦେଖିବାକୁ ପାଇଥାଉଁ ଏ ଆନ୍ଦୋଳନ ଏଇ ଅଭିଭାଷଣ ପରେ କେବଳ ଚରମସୀମାରେ ଉପନୀତ ହୋଇଥିଲା । ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ନୁହେଁ, ତାହା ବଙ୍ଗଳାର ଏକ ଉପଭାଷା ମାତ୍ର - ଏପରି ଏକ ଅବାଞ୍ଛିତ ସ୍ୱରର ମୂଲ୍ୟ ପ୍ରଶାସନିକ ଦୃଷ୍ଟିକୋଣରୁ ଶାସକଙ୍କ ଆଖିରେ ଏକାନ୍ତ ମୂଲ୍ୟହୀନ ବିବେଚିତ ହୋଇଥିଲା । ତେଣୁ ୧୮୬୯ ସାଲର ଶେଷଭାଗରେ ଓଡ଼ିଶାର ବିଦ୍ୟାଳୟମାନଙ୍କରେ ଓଡ଼ିଆ ଏକ ଭାଷା ରୂପେ ପଢ଼ାହେବାର ସରକାରୀ ଆଦେଶ ପ୍ରଚାରିତ ହୋଇଥିଲା । ତଥାପି ୧୮୭୦ ସାଲର ପ୍ରଥମ ଭାଗରେ ବାଲେଶ୍ୱର ହାଇସ୍କୁଲର ପଣ୍ଡିତ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ 'ଉଡ଼ୟା ସ୍ୱତନ୍ତ୍ରଭାଷା ନୁହେଁ' ନାମକ ଏକ କ୍ଷୁଦ୍ର ପୁସ୍ତକ ପ୍ରକାଶ କରି ପୂର୍ବ ଆନ୍ଦୋଳନରେ କେବଳ ନୂତନ ବଳ ସଞ୍ଚାର କରିଥିଲେ । ଏଇ ପୁସ୍ତକରେ ସମସ୍ତ ଅବଦାନକୁ ବିମ୍‌ସ୍ ସାହେବ ଗୋଟିଏ ବାକ୍ୟାଂଶରେ ପ୍ରକାଶ କରି କହିଥିଲେ, "This little book, though profoundly destitute of philological arguments, has created some stir among the natives of

the province, who are some what disgusted at finding their native language treated as a mere corruption of Bengali. The local excitement on the subject has led me to look into the question more closely than I had before, though in the course of reading for my, "Comparative Grammar of the Modern Aryan Languages" I had come upon many peculiarities, both of phonetics and inflection, which has caused me long ago to make up my mind as to the right of the Uriya to be considered a language perse.''

ଏଠାରେ ସ୍ପଷ୍ଟ ମନେ ରଖିବା ଉଚିତ ଯେ ବିମ୍ସ ସାହେବଙ୍କ ଏଇ ଲେଖାର ପୂର୍ବରୁ ବିଦ୍ୟାଳୟରେ ଓଡ଼ିଆ ପଢ଼ା ହେବାର ସରକାରୀ ଆଦେଶ ପ୍ରଚାରିତ ହୋଇ ସାରିଥିଲା । ସେଇ ବିବାଦବେଳେ ଓଡ଼ିଆମାନଙ୍କ ମଧ୍ୟରୁ କେହି ଜଣେ, the right of the Uriya to be considered a language perse' ରୂପକ ପ୍ରଶ୍ନ ଉପରେ ବିଶେଷ ଜୋର୍ ଦେଇ ଓଡ଼ିଆଭାଷାର ସ୍ୱାତନ୍ତ୍ୟ ସପକ୍ଷରେ ଯୁକ୍ତି ପରିବେଷଣ କରି ନଥିଲେ । ସେମାନଙ୍କ ଯୁକ୍ତି ଥିଲା ପୂର୍ଣ୍ଣତଃ ଜାତିପ୍ରୀତି ଅନୁରଞ୍ଜିତ ; ତାହା ଥିଲା ଭାବୋନ୍ମାଦବ୍ୟଞ୍ଜକ ତଥା ଭାଷାପ୍ରତି ଗଭୀର ମମତାବୋଧସୂଚକ । ଭାଷାର ସ୍ୱାତନ୍ତ୍ୟ ପ୍ରତିଷ୍ଠା ପାଇଁ ଯେଉଁ ଗଭୀର ଭାଷାତାତ୍ତ୍ୱିକ ଜ୍ଞାନ ଏକାନ୍ତ ଆବଶ୍ୟକ, ସେପରି ଜ୍ଞାନର ଅଧିକାରୀ ସେ ସମୟର କେଉଁ ଓଡ଼ିଆ ଥିଲେ ବୋଲି ବିଶ୍ୱାସ କରି ହେଉନାହିଁ, ସେଥିପାଇଁ ବିମସ୍ ସାହେବ ଯଥାର୍ଥତଃ କହିଛନ୍ତି ।

''Unfortunately such a book could only be written be a resident of the province, as no respectable grammar or dictionary of the language has yet been published ; and as there are few persons in Orissa who are competent to take up the enquiry and work it out fully, we cannot expect to see a good answer to Baboo Kantichandra's book yet a while.''

ଗୋଟିଏ ଭାଷାର ସ୍ୱାତନ୍ତ୍ୟ ଦୁଇଟି ଦୁଗରୁ ପ୍ରମାଣ କରାଯାଇପାରେ । ପ୍ରଥମତଃ ତା'ର ଅନ୍ତଃସ୍ୱରୂପର ବୈଶିଷ୍ଟ୍ୟ ପ୍ରତିପାଦନ, ଯାହାର ବିଶ୍ଳେଷଣ ସେଇ ଭାଷାର ପରିସର

ମଧ୍ୟରେ ସୀମିତ ଥାଏ । ଓଡ଼ିଆ ଭାଷାର ଉଚ୍ଚାରଣ ପଦ୍ଧତି, ତା'ର ଅକ୍ଷରର ସ୍ୱାତନ୍ତ୍ର୍ୟ, ବିଭକ୍ତି ପ୍ରୟୋଗର ବୈଶିଷ୍ଟ୍ୟ ପ୍ରଭୃତି ଦୃଷ୍ଟିରୁ ବିମସ୍ ସାହେବ ଯେଉଁ ଆଲୋଚନା କରିଛନ୍ତି ତାହା ଏଇ ବିଭାଗର ଅନ୍ତର୍ଭୁକ୍ତ । ଦ୍ୱିତୀୟତଃ, ତୁଳନାତ୍ମକ ଭିତ୍ତିରେ ତା'ର ସ୍ୱକୀୟତାର ମହତ୍ତ୍ୱ ପ୍ରତିପାଦନ ଯାହାର ବିଶ୍ଳେଷଣ ଭିତରେ ଅନ୍ୟ ଭାଷାର ସ୍ୱରୂପ ସ୍ୱତଃ ବିଚାରକୁ ଚାଲି ଆସିଥାଏ । ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା ପାଇଁ ବିମସ୍ ସାହେବ ଏଇ ଦ୍ୱିତୀୟ ଦିଗ ପ୍ରତି କିପରି ସଚେତନ ଥିଲେ ଓଡ଼ିଆ 'କ୍ରିୟାର' ଆଲୋଚନାରୁ ତାହାର କେତେକ ପରିଚୟ ଦେଖନ୍ତୁ । ସେ କହିଛନ୍ତି -

" The Uriya verb in its general scheme approaches more closely to the Hindu, and holds a respectable place among its sister languages, not being too luxuriant like the Gujarati, nor too scanty like the Pubjabi; and with a regular system of terminations, in which respect it is superior to the Marhathi and Sindhi, in neither of which do any two tenses exactly harmonize and in which the troublesome and unnecessary element of gender is introduced.As might be expected from the comparative peace that Orissa has enjoyed, and its long immunity from foreign aggressions, the verb has preserved tones and traces of much greater antiquity than any other language of the group."

ଭାଷାର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠା ପାଇଁ ତୁଳନାତ୍ମକ ଭିତ୍ତିରେ ତା'ର ସ୍ୱରୂପ ବିଶ୍ଳେଷଣ ଯେ ଏକାନ୍ତ ଆବଶ୍ୟକ ତାହା ବିମସ୍ ସାହେବ ପୂର୍ଣ୍ଣତଃ ଅନୁଭବ କରିଥିଲେ । ପରବର୍ତ୍ତୀ ସମୟରେ ପ୍ରକାଶିତ 'A Comparative Grammar of the Modern Aryan Languages of India' ପୁସ୍ତକରେ ତାଙ୍କର ଏଇ ବୃହତ୍ତର ଦୃଷ୍ଟିକୋଣଟି ସର୍ବତ୍ର ରୂପାୟିତ ହୋଇଥିବାର ଦେଖିବାକୁ ମିଳେ । ଯେଉଁ ସମୟରେ ଭାଷାତତ୍ତ୍ୱ କହିଲେ ଯାହା ବୁଝାଯାଏ ଏ ଦେଶ ଲୋକଙ୍କ କଳ୍ପନାର ସମ୍ପୂର୍ଣ୍ଣ ବହିର୍ଭୂତ ଥିଲା, ଭାଷାର ଯଥାର୍ଥ ସ୍ୱରୂପ ଉପଲବ୍ଧି ପାଇଁ କେଉଁ ଦିଗରେ ଅଗ୍ରସର ହେବା ଏକାନ୍ତ ବାଞ୍ଛନୀୟ, ଯେଉଁ ସମୟରେ ଏପରି ଏକ ଗୁରୁତର ପ୍ରଶ୍ନ ଏ ଦେଶ ଲୋକଙ୍କ ମନକୁ ଆଦୌ ସ୍ପର୍ଶ କରି ନଥିଲା, ଠିକ୍ ସେହି ଘନଘୋର ଅନ୍ଧକାର ଯୁଗରେ ଜଣେ ବିଦେଶୀ ଶାସକ ଏ ଦେଶକୁ ଆସି, ଲୋକଙ୍କ ମୁଖର ଭାଷା କାନରେ ଶୁଣି, ତୁଳନାତ୍ମକ ଭିତ୍ତିରେ ଏ ଭାଷାର ସ୍ୱାତନ୍ତ୍ର୍ୟ ତଥା ମହନୀୟତା

ପ୍ରତିପାଦନ କରିବା କମ୍ ଗୌରବର ବିଷୟ ନୁହେଁ । ତେଣୁ, ବିମସ୍ ସାହେବଙ୍କ ଭାଷାତତ୍ତ୍ୱ ଆଲୋଚନା ଯେପରି ଭାଷା-ବିଲୋପ ରୂପକ ଏକ ଐତିହାସିକ ପୃଷ୍ଠଭୂମି ଉପରେ ପ୍ରତିଷ୍ଠିତ, ତାଙ୍କ ଆଲୋଚନାର ବୃହତ୍ତର ଦୃଷ୍ଟିକୋଣଟି ସେଇପରି ଯଥାର୍ଥ ଭାଷା-ଆଲୋଚନାର ସାର୍ଥକ ଦିଗ୍‌ଦର୍ଶକ ମଧ୍ୟ । ଏଠାରେ ସ୍ପଷ୍ଟ ମନେରଖିବା ଉଚିତ ଯେ, ବିମସ୍ ସାହେବଙ୍କ ଓଡ଼ିଆ ଭାଷା-ଆଲୋଚନା ଓଡ଼ିଆ-ଭାଷା-ପ୍ରବର୍ତ୍ତନ କ୍ଷେତ୍ରରେ ସରକାରୀ ଆଦେଶର ପ୍ରସ୍ତୁତି ଓ ପ୍ରଚାରର କୌଣସି ଆନୁଷଙ୍ଗିକ ଅସ୍ତ୍ରରୂପେ ବ୍ୟବହୃତ ହେବା ପାଇଁ ଉଦ୍ଦିଷ୍ଟ ନ ଥିଲା । କାରଣ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ଦୃଷ୍ଟିରୁ ବିଦ୍ୟାଳୟରେ ତା'ର ପ୍ରଚଳନ ପାଇଁ ସରକାରୀ ଆଦେଶ ତାଙ୍କ ଲେଖା ପୂର୍ବରୁ - ଏ ଦେଶରେ ପ୍ରଚାରିତ ହୋଇସାରିଥିଲା । ତାଙ୍କ ଭାଷାତାତ୍ତ୍ୱିକ ଆଲୋଚନାର ଐତିହାସିକ ବୈଶିଷ୍ଟ୍ୟ ଆମକୁ ଅନ୍ୟତ୍ର ଅନୁସନ୍ଧାନ କରିବାକୁ ହେବ । ଓଡ଼ିଆ ଭାଷା ବଙ୍ଗଭାଷାର ଏକ ଉପଭାଷା - ଏଇ ଗ୍ଲାନିକର ମନ୍ତବ୍ୟ ସେ ସମୟର ସମସ୍ତ ଶିକ୍ଷିତ ଓଡ଼ିଆଙ୍କୁ ବ୍ୟଥିତ କରୁଥିଲେ ସୁଦ୍ଧା ସେମାନଙ୍କ ମଧ୍ୟରୁ କେହି ଜଣେ ଏପରି ଅର୍ଥହୀନ ମନ୍ତବ୍ୟକୁ ଯଥାଯଥ ଭାବେ ଖଣ୍ଡନ କରିବାକୁ ସମର୍ଥ ନଥିଲେ । ଏପରି ଅଭିମତର ଅନ୍ତଃସାରଶୂନ୍ୟତା ପ୍ରମାଣ ପାଇଁ ଆବଶ୍ୟକ ଥିଲା ଆଲୋଚକର ଭାଷାତତ୍ତ୍ୱ ଉପରେ ଗଭୀର ପାଣ୍ଡିତ୍ୟ । ବିମସ୍ ଥିଲେ ଏଇ ପ୍ରକାର ପାଣ୍ଡିତ୍ୟ ଓ ବିଦ୍‌ବତ୍ତାର ଜଣେ ସାର୍ଥକ ପ୍ରତିନିଧି । ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ପ୍ରତିପାଦନ ପାଇଁ ତାଙ୍କର ଗମ୍ଭୀର ଆଲୋଚନା ଏ ଜାତିକୁ ଏକ ଜାତୀୟ କଳଙ୍କରୁ ମୁକ୍ତ କରି ଦେଇଥିଲା ମାତ୍ର । ତାଙ୍କ ଆଲୋଚନାର ନିଜସ୍ୱ ଦୃଷ୍ଟିକୋଣ ଓ ତା'ର ଐତିହାସିକ ଗୁରୁତ୍ୱ ଏଇ ଜାତୀୟ କଳଙ୍କ-ବିମୁକ୍ତିର ପ୍ରଚେଷ୍ଟାରେ ଆମେ ସ୍ପଷ୍ଟତଃ ଅନୁଭବ କରିଥାଉଁ । ସେଥିପାଇଁ ତାଙ୍କର ପ୍ରତ୍ୟେକ ଲେଖାରେ ଓଡ଼ିଆ ଭାଷାର ଗୌରବ ଉଚ୍ଛ୍ୱସିତ ସ୍ୱରରେ କୀର୍ତ୍ତିତ ହେଲାବେଳେ ବଙ୍ଗଳାଭାଷା ସେଥିରେ ସମଧିକ ସମ୍ମାନିତ ହୋଇଛି ବୋଲି ମନେ ହୁଏ ନାହିଁ ।

ଏଇ ମାଟିର ମଣିଷ ଓ ତା' ତୁଣ୍ଡର ଭାଷା ଯେମିତି ବିମସ୍‌ଙ୍କର ଭାଷାତତ୍ତ୍ୱ - ଆଲୋଚନାର ପ୍ରାଣକେନ୍ଦ୍ର ଥିଲା, ତା'ର ସାହିତ୍ୟ ମଧ୍ୟ ତାଙ୍କ ଦୃଷ୍ଟିରେ ନ୍ୟୁନ ଆସନର ଅଧିକାରୀ ନଥିଲା । ଏ ଦେଶର ସାହିତ୍ୟ ଉପରେ ସେ କହିଛନ୍ତି - "On the whole, then, it may be said that this literature is worth preserving. It shows us the people as they are and were – not as the English school master

would have them to be – and possesses a value even in its faults,quite above and apart from the spurious unnatural literature composed of works written to order by Fort William Pandits and Maulavis." ଜାତିର ମୌଳିକ ସାହିତ୍ୟ ନିରୀକ୍ଷଣ ନ କଲେ ତା'ର ଭାଷାଉପରେ ଯଥାର୍ଥ ଜ୍ଞାନଅର୍ଜନ କରିବା ସମ୍ପୂର୍ଣ୍ଣ ଅସମ୍ଭବ । ଏପରି ସାହିତ୍ୟର ଅନୁସନ୍ଧାନ, ସେଥିରୁ କେଉଁଟି ସଂରକ୍ଷଣର ଏକାନ୍ତ ଉପଯୋଗୀ ଓ କେଉଁଟି ସମ୍ପାଦନା ମାଧ୍ୟମରେ ପ୍ରକାଶ ପାଇବା ଉଚିତ୍ - ଏ ସମସ୍ତ ବିଷୟ ଉପରେ ସେ ଏମିତି ଆଲୋକପାତ କରିଛନ୍ତି ।

"What we want is, first to find out what books exist in the various languages; secondly, to have them read with a view to finding out which are worth preserving and printing, and thirdly, to get scholars to edit such as may be worth the trouble.

We shall then be able to place in the hands of the students real genuine native works from which he could leam what the language he was studying really was, instead of, as at present, misleading him by trash like the Bagh - O - Bahar or Baital Pachichi, composed in a language which no native ever speaks and which he can with difficulty understand." ଓଡ଼ିଆ ଭାଷା ତଥା ତା'ର ସାହିତ୍ୟ ଅଧ୍ୟୟନ ଦିଗରେ ବିମସ୍ ସାହେବଙ୍କ ସୁଦୂର ଅନ୍ତର୍ଦୃଷ୍ଟିର ମୌଳିକତା ଓ ମହନୀୟତା କେତେ ଥିଲା, ତାହା ସେତିକିବେଳେ ସ୍ପଷ୍ଟତଃ ଅନୁଭୂତ ହୁଏ ; ଯେତେବେଳେ ଦୀର୍ଘ ଚାଳିଶ ବର୍ଷ ପରେ ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଭାଷାତାତ୍ତ୍ୱିକ ଆଲୋଚନା ଓ ଦୀର୍ଘ ପଞ୍ଚାବନ ବର୍ଷ ପରେ ଆବିର୍ଭୂତ 'ପ୍ରାଚୀ' ସମ୍ପାଦିତ ପୁସ୍ତକାବଳୀ ନିକଟରେ ଆମେ ଉପସ୍ଥିତ ହେଉ ।

**(ସୌଜନ୍ୟ : 'ମୁଁ କିପରି ଗବେଷଣା କଲି' - ଡକ୍ଟର ନଟବର ସାମନ୍ତରାୟ)**



# ଜନ୍ ବୀମ୍‌ସଙ୍କ ଦୃଷ୍ଟିରେ ସେଦିନର ଉଦୟଗିରି

ଶ୍ରୀମତୀ ଜ୍ୟୋସ୍ନା ଦାସ

ଉତ୍କଳ ଉତ୍କୃଷ୍ଟ କଳାର ଦେଶ । ଉତ୍କଳୀୟମାନେ ପ୍ରକୃତିଗତଭାବେ ନିପୁଣ କଳାକାର ଥିଲେ । କେବଳ କଳା କ୍ଷେତ୍ରରେ ନୁହେଁ, ବାଣିଜ୍ୟବ୍ୟବସାୟ ଓ ବୀରତ୍ୱ ପାଇଁ ମଧ ଏକଦା ପ୍ରସିଦ୍ଧ ଅର୍ଜନ କରିଥିଲେ । ଓଡ଼ିଶାର ଧର୍ମ, ସଂସ୍କୃତି, ପରମ୍ପରାର ନିଜସ୍ୱ ଶୈଳୀ ଥିଲା । ଅତୀତର ଓଡ଼ିଆ ବୀର ପୁଙ୍ଗବମାନଙ୍କର କୃତିତ୍ୱର ଗାଥା ଆଜି ଆମର ଗର୍ବ ଓ ଗୌରବର ଉପାଖ୍ୟାନ ହୋଇ ରହିଛି । ଆଜି ଉତ୍କଳୀୟମାନଙ୍କ ସେ ଜାତୀୟତାବୋଧ, ଅମାପ ସାହସିକତା ଓ ସର୍ବୋପରି ସ୍ୱାଭିମାନ ଲୁପ୍ତପ୍ରାୟ ।

ଇତିହାସର ପୃଷ୍ଠା ଓଲଟାଇଲେ କୌଣସି ଜାତିର ଐତିହ୍ୟ, ପରମ୍ପରା, ଧର୍ମ-ଚେତନା, କଳା ଓ ସ୍ଥାପତ୍ୟ, ଶିକ୍ଷା ଓ ସଂସ୍କୃତି ବିଷୟରେ ଜାଣିବାକୁ ମିଳେ । ସାହିତ୍ୟ ହେଉଛି ଗୋଟିଏ ଜାତିର ମେରୁଦଣ୍ଡ । ତାରି ଭିତରେ ଜାତି ବଞ୍ଚିରହେ । ଠିକ୍ ସେହିପରି କଳା ଓ ସ୍ଥାପତ୍ୟ.. । ଇତିହାସ ଲିପିବଦ୍ଧ ସ୍ୱାକ୍ଷର ହେଲେ, ସ୍ଥାପତ୍ୟ ନିହାଣ ମୁନର କବିତା... ଦରଦୀ ଶିଳ୍ପୀମନର ପରିସ୍ଫୁଟ ରୂପ । ସ୍ୱପ୍ନବିଳାସୀ ଶିଳ୍ପୀଟିଏ ତା' ନିଭୃତ ମନର କଳ୍ପନାର ବାସ୍ତବ ରୂପରେଖ ଛାଡ଼ି ଯାଇଥାଏ, ମନ୍ଦିରର ଗାତ୍ରରେ, ଶିଳାଲେଖର ଭାସ୍କର୍ଯ୍ୟରେ -

ସେହିପରି ଓଡ଼ିଆ ଶିଳ୍ପୀର ନିହାଣ ମୁନରେ ଲେଖାଯାଇଥିବା କବିତା ବହୁ ମନ୍ଦିର ଗାତ୍ରରେ, ବିଭିନ୍ନ ଶିଳାଲେଖରେ ଓ ବହୁ ସ୍ଥାପତ୍ୟ ମଧ୍ୟରେ ଦେଖିବାକୁ ମିଳେ । ସେସବୁ ନିଜସ୍ୱ ସ୍ୱାତନ୍ତ୍ର୍ୟରେ ମହିମାନ୍ୱିତ । ବିଭିନ୍ନ ସମୟରେ ଏସବୁ ଅସଂଖ୍ୟ ପର୍ଯ୍ୟଟକ ଓ ବହୁ ବିଶିଷ୍ଟ ବ୍ୟକ୍ତିତ୍ୱଙ୍କର ଆକ୍ରମଣର କେନ୍ଦ୍ରବିନ୍ଦୁ ହୋଇଛି । ସେମାନଙ୍କୁ ମନ୍ତ୍ରମୁଗ୍ଧ କରିବା ସହିତ, ତାଙ୍କ ମନରେ ଉତ୍କଳ ପାଇଁ ଏକ ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରିଛି ।

ଜନ୍ ବୀମ୍‌ସ ଓଡ଼ିଶାରେ ତାଙ୍କର ନଅବର୍ଷର ରହଣି କାଳ ମଧ୍ୟରେ ଓଡ଼ିଶା ବିଷୟରେ ଷୋହଳଟି ପ୍ରବନ୍ଧ ଲେଖିଥିଲେ । ସେଗୁଡ଼ିକ ଓଡ଼ିଶାର ସାହିତ୍ୟ, ଇତିହାସ, ଭାଷା, ଭୂଗୋଳ ଓ ସ୍ଥାପତ୍ୟ ସମ୍ବନ୍ଧୀୟ । ସେହି ପ୍ରବନ୍ଧଗୁଡ଼ିକ ୧୮୭୦ରୁ ୧୮୯୬ ମସିହା ମଧ୍ୟରେ ପ୍ରକାଶିତ ହୋଇଥିଲା । ଉଦୟଗିରି, ଲଳିତଗିରିର କାରୁକାର୍ଯ୍ୟ ତାଙ୍କୁ ସର୍ବୋପରି ଆଶ୍ଚର୍ଯ୍ୟ ଚକିତ କରିଥିଲା ।

ରାଜଧାନୀ ଭୁବନେଶ୍ୱରଠାରୁ ପ୍ରାୟ ନବେ କିଲୋମିଟର ଦୂରରେ ଲଳିତଗିରି, ରତ୍ନଗିରି ଓ ଉଦୟଗିରି ଅବସ୍ଥିତ । ଏଗୁଡ଼ିକ ମୁଖ୍ୟତଃ ବୌଦ୍ଧପୀଠ । ଏଇ ତିନୋଟି ପାହାଡ଼ରେ ବିଶ୍ୱର ଶ୍ରେଷ୍ଠ ବୌଦ୍ଧବିହାରର ଧ୍ୱଂସାବଶେଷ ଦେଖିବାକୁ ମିଳେ । ଲଳିତଗିରି ବିରୂପା ନଦୀଠାରୁ ମାତ୍ର ଦଶ କିଲୋମିଟର ଦୂରରେ ଅବସ୍ଥିତ । ଏଠାରୁ ମିଳିଥିବା ବୌଦ୍ଧକୀର୍ତ୍ତିସବୁ ସର୍ବପୁରାତନ ଓ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ବୋଲି ଇତିହାସକାରମାନଙ୍କ ମତ । ଏହାର କୀର୍ତ୍ତିରାଜିର ଯାହା ଅବଶିଷ୍ଟ ଅଛି, ତାହା ଅନନ୍ୟ । ତନ୍ମଧ୍ୟରୁ ଗୁରୁତ୍ୱପୂର୍ଣ୍ଣ ହେଉଛି ଏକ ମନ୍ଦିରର ଧ୍ୱଂସାବଶେଷ । ମନ୍ଦିରର ଚତୁଃପାର୍ଶ୍ୱରେ ରହିଛି ସ୍ତୂପ ଓ ବୌଦ୍ଧବିହାର । ଏହିପରି ମନ୍ଦିର ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ ମଥୁରା, ତକ୍ଷଶିଳା ଓ ଭୁବନେଶ୍ୱରସ୍ଥିତ ଉଦୟଗିରି ନିକଟରେ ନିର୍ମିତ ହୋଇଥିଲା । ଲଳିତଗିରିର ଭାସ୍କର୍ଯ୍ୟ କଳାର ଛାଭା ଓ ଦକ୍ଷିଣପୂର୍ବ ଏସିଆର ବୌଦ୍ଧକଳା ସହିତ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଲଳିତଗିରିରେ ଥିବା ବୁଦ୍ଧଙ୍କ ପ୍ରତିମୂର୍ତ୍ତି ଖୁବ୍ ବିଶାଳ ।

ରତ୍ନଗିରି ଓ ଉଦୟଗିରି ଏହାର ପରବର୍ତ୍ତୀ ସମୟରେ ବିକଶିତ ହୋଇଥିଲା ବୋଲି ମନେକରାଯାଏ । କମିରିଆ ନଦୀ ରତ୍ନଗିରିଠାରୁ ଲଳିତଗିରିକୁ ଅଲଗା କରୁଛି । ତାନ୍ତ୍ରିକ ବୌଦ୍ଧଧର୍ମର କେନ୍ଦ୍ରସ୍ଥଳୀ ଥିଲା ରତ୍ନଗିରି ଓ ଉଦୟଗିରି । ଏହିଠାରୁ ସାରା ଭାରତରେ ତାନ୍ତ୍ରିକ ବୌଦ୍ଧଧର୍ମ ପ୍ରସାର ଲାଭ କରିଥିଲା । ଏକ ବୁଦ୍ଧତନ୍ତ୍ର ଆବିଷ୍କୃତ ହେବାପରେ ଏହା ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀର ବୋଲି ଜଣାପଡ଼େ । ବୌଦ୍ଧଧର୍ମର ମୂଳ କେନ୍ଦ୍ରଭାବେ ଏହା ସାରା ବିଶ୍ୱରେ ଖ୍ୟାତି ଅର୍ଜନ କରିଥିଲା ।

ଜନ୍ ବୀମ୍ସ କଟକର କଲେକ୍ଟର ଥିଲାବେଳେ ୧୯୭୬ ମସିହାରେ ଉଦୟଗିରି ପରିଦର୍ଶନ କରିଥିଲେ । ଆଜିଠାରୁ ପ୍ରାୟ ୧୩୨ ବର୍ଷ ପୂର୍ବେ ସେ ସେହି ଐତିହାସିକ ସ୍ଥାନକୁ ଯେଉଁଭଳି ଦେଖାଇଥିଲେ, ତାହା ସୂଚାଇ ଦେବା ପୂର୍ବରୁ କୁହାଯାଇ ପାରେ ଯେ, ବୀମ୍ସ ତାଙ୍କ ରହଣି ସମୟରେ ଓଡ଼ିଶା ପାଇଁ ଯଥାସାଧ୍ୟ କାର୍ଯ୍ୟ କରିଯାଇଛନ୍ତି । ଆଜି ଯଦି ଓଡ଼ିଆ ଭାଷା ଏକ ସ୍ୱତନ୍ତ୍ର ଭାଷା ଭାବେ ତିଷ୍ଠି ରହିଛି, ସେଥିପାଇଁ ତାଙ୍କର ଅବଦାନ କିଛି କମ୍ ନୁହେଁ । ସେ ଓଡ଼ିଶାପାଇଁ ପ୍ରାତଃସ୍ମରଣୀୟ । ତାଙ୍କ ଲିଖିତ ପ୍ରବନ୍ଧରେ ସେ ଓଡ଼ିଶାର କଳାସ୍ଥାପତ୍ୟକୁ ଅନନ୍ୟ ମର୍ଯ୍ୟାଦା ଦେଇଛନ୍ତି । ତାଙ୍କ ଦୃଷ୍ଟିରେ ଓଡ଼ିଶା ମନ୍ଦିରମାଳିନୀ । ବହୁ ପୁରାତନ କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିର, ଦୁର୍ଗ ଓ ମନୋମୁଗ୍ଧକର ମୂର୍ତ୍ତିର ସମାହାର ଏଠାରେ ଦେଖିବାକୁ ମିଳେ ।

ଉଦୟଗିରିକୁ ସେ ଉଦିତ-ସୂର୍ଯ୍ୟର ପାହାଡ଼ ରୂପେ ନାମିତ କରିଛନ୍ତି । ବିରୂପାନଦୀ ନିକଟରେ ଗୋପାଳପୁରଠାରୁ ପାଞ୍ଚ କିଲୋମିଟର ଦକ୍ଷିଣ-ପଶ୍ଚିମ ଦିଗରେ ଏହା ଅବସ୍ଥିତ ।

ପୁରାତନ ବୌଦ୍ଧ କୀର୍ତ୍ତିରେ ଏହା ପରିପୂର୍ଣ୍ଣ । ପାହାଡ଼ର ପାଦଦେଶରେ ପଦ୍ମଫୁଲ ଧାରଣ କରିଥିବା ଲୋକେଶ୍ୱରଙ୍କର ଏକ ବିଶାଳ ମୂର୍ତ୍ତି ଦେଖିବାକୁ ମିଳେ । ଏହି ମୂର୍ତ୍ତିରେ ଦୁଇପ୍ରକାରର ଶିଳା ଲିପି ରହିଛି । ଏହାଠାରୁ ଅନତିଦୂରରେ ରହିଛି ବୁଦ୍ଧଙ୍କର ଭୂମିସ୍ପର୍ଶ ମୁଦ୍ରାରେ ଥିବା ଏକ ବିଶାଳ ପ୍ରତିମୂର୍ତ୍ତି । ଏଠାରୁ ବହୁ ପ୍ରାଚୀନ କୀର୍ତ୍ତିକୁ ପାଟଣା ସଂଗ୍ରହାଳୟକୁ ସ୍ଥାନାନ୍ତର କରାଯାଇଥିବା ଜଣାଯାଏ । ଏହି ପାହାଡ଼ ମହାନଦୀର ଦୁଇଟି ଶାଖା ନଦୀର ମଧ୍ୟବର୍ତ୍ତୀ ତ୍ରିକୋଣଭୂମିରେ ଅବସ୍ଥିତ ।

ଉଦୟଗିରିକୁ ତନ୍ନ ତନ୍ନ ଭାବେ ପରିଭ୍ରମଣ କରି ବୀମ୍‌ସ ତାଙ୍କ ପ୍ରବନ୍ଧରେ ବିଶଦ ଭାବେ ଏହାର ବର୍ଣ୍ଣନା କରିଛନ୍ତି । ତାଙ୍କ ଦୃଷ୍ଟିରେ ଏହା ଏକ ଛୋଟ ଅପରିଷ୍କାର ପାହାଡ଼ । ତା' ଶିଖର ଦେଶରେ ଏକ ମସ୍‌ଜିଦ୍ ମଧ୍ୟ ଦେଖିବାକୁ ମିଳିଥିଲା । ଚତୁର୍ଦ୍ଦିଗ ଛୋଟ ବୁଦାଜାତୀୟ ଗଛ ଓ କଣ୍ଟକିତ ଗୁଳ୍ମରେ ପରିପୂର୍ଣ୍ଣ । ନିଜର ସହଯୋଗୀ ଫକ୍‌ନର୍ ଓ କେତେକ କୁଲିଙ୍କ ସହ ଯାଉଯାଉ ଏକ ଖାଇ ତାଙ୍କର ଦୃଷ୍ଟିଗୋଚର ହୋଇଛି । ଖାଇଟି ଅଗମ୍ୟ କୁଲିମାନଙ୍କ ଦ୍ୱାରା ପରିଷ୍କାର କଲାପରେ ଏକ ବିରାଟ କୂପ ସେମାନଙ୍କର ଦୃଷ୍ଟିରେ ପଡ଼ିଛି, ଯାହାକୁ ସେ 'ବାଓଲି' ଭାବେ ଅଭିହିତ କରିଛନ୍ତି । ପ୍ରାୟ ପଚାଶଫୁଟ ଗଭୀର କୂଅଟି ଦେଖିବାକୁ ଗୋଲାକାର । ତଳକୁ ଓହ୍ଲାଇବା ଓ ପୁନର୍ବାର ଚଢ଼ିବା ପାଇଁ ପଥର ନର୍ମିତ ଦୁଇଟି ପାବଛ ଶ୍ରେଣୀ ରହିଛି । ପାହାଚଗୁଡ଼ିକର ଶେଷ ଭାଗରେ ପଥର ଏହା ଖୁବ୍ ଗଭୀର ମନେହେଉଛି । ପାହାଚ ଶ୍ରେଣୀ ଥିବା କୂଅର ଉପର ଅଂଶର କାନ୍ଥରେ ଅସଂଖ୍ୟ ନାମ ଲେଖା ହୋଇଛି । ସେ ଲିପି ବହୁ ପୁରୁଣା, ଅସ୍ପଷ୍ଟ ! ଏସବୁ ସମ୍ଭବତଃ ତୀର୍ଥଯାତ୍ରୀମାନଙ୍କର ନାମ ହୋଇପାରେ । ବୀମ୍‌ସ୍ ସେ ଲିପିକୁ "କୁଟିଳ" ଅକ୍ଷର ନାମରେ ନାମିତ କରିଛନ୍ତି । ଯେତେଦୂର ସମ୍ଭବ ସେହି ଶିଳାଲିପିମାନ ହଜାରେ ବର୍ଷର ପୁରୁଣା ହୋଇପାରେ । ପରିତ୍ୟକ୍ତ ଓ ମନରେ ଭୟସଞ୍ଚାର କରୁଥିବା କୂଅକୁ ଦେଖି ତାଙ୍କ କୁଲିମାନେ ତା' ଭିତରକୁ ପଶିବାକୁ ମନାକଲେ । ସେମାନଙ୍କର ବିଶ୍ୱାସ ଥିଲା ନିଶ୍ଚୟ ସେଠି ଭୂତ ରହିଥିବ । ତା' ଭିତରକୁ ଗଲେ ମୃତ୍ୟୁ ସୁନିଶ୍ଚିତ । ଯା' ହେଉ ବହୁ ବୁଝାସୁଝା କରି ଅଧିକ ପାରିଶ୍ରମିକ ଦେଇ ସେମାନଙ୍କୁ କାମ କରିବାକୁ ରାଜି କରାଯାଇ ପାରିଥିଲା । କୂଅ ନିକଟରେ ଏକ ପାଦଚଲା ରାସ୍ତା ଦେଖିବାକୁ ମିଳିଲା । ଛୋଟ ଛୋଟ ପଥରମାନ ପୋତାଯାଇ ରାସ୍ତାଟି ଚିହ୍ନିତ ହୋଇଥିଲା । ଅନାବନା ଗଛଲତା ଚାରିଆଡ଼ ଘେରି ରହିଥିଲା । ରାସ୍ତାର ଅପର ପାର୍ଶ୍ୱରେ ବିଚିତ୍ର ଦୃଶ୍ୟ ଦେଖି ବୀମ୍‌ସଙ୍କର ଆଶ୍ଚର୍ଯ୍ୟର ସୀମା ରହିଲାନି । ଗଛଲତାରେ ଆଚ୍ଛାଦିତ ସେହି ସ୍ଥାନରେ ଅସଂଖ୍ୟ ବୌଦ୍ଧମୂର୍ତ୍ତି ଏଠିସେଠି ବିକ୍ଷିପ୍ତ ଭାବେ ମୁହଁମାଡ଼ି ପଡ଼ିଥିଲେ । ଛୋଟବଡ଼ ବିଭିନ୍ନ ଆକାରର ଶିଳ୍ପସୃଷ୍ଟିର ଏ ଅନାଦର ଦୃଶ୍ୟ

ବାସ୍ତବିକ ଅସହ୍ୟ । ଛଅଇଞ୍ଚରୁ ଆରମ୍ଭ କରି ଚାରିଫୁଟ ପର୍ଯ୍ୟନ୍ତ ଉଚ୍ଚତାର ମୂର୍ତ୍ତିମାନ ଆଲୋଡ଼ା ଓ ଅଦରକାରୀ ଭାବେ ସେ ଆରଣ୍ୟକ ପରିବେଶରେ ଧ୍ୱଂସକୁ ଅପେକ୍ଷା କରୁଥିଲେ । ଗଛଲତା ଆଢୁଆଳରୁ ସେମାନଙ୍କ ସଂଖ୍ୟା ଆକଳନ କରିବାକୁ ଯାଇ ସେ ଦେଖିଲେ ତାହା କେତେ ହଜାର ହୋଇ ପାରେ । ବର୍ଷବର୍ଷର ସାଧନା ଓ ଅଧ୍ୟବସାୟରେ ସଯତ୍ନେ ନିର୍ମିତ କାରୁକାର୍ଯ୍ୟର ସତରେ କି ନଷ୍ଟରୁଣ ପରିଣତି । ସେ ଦୃଶ୍ୟ ଯେତିକି ଦୁଃଖଦାୟକ ସମପରିମାଣର ହୃଦୟ ବିଦାରକ ମଧ ।

ସେହି ପାଦଚଲା ରାସ୍ତା ଆଗକୁ ଲମ୍ବିଥିଲା । ପ୍ରାୟ ଅଧମାଇଲ ଗଲାପରେ ରାସ୍ତାଟି ସରି ଯାଇଥିଲା । ଠିକ୍ ରାସ୍ତାର ଶେଷ ଭାଗରେ କାରୁକାର୍ଯ୍ୟପୂର୍ଣ୍ଣ ଏକ ତୋରଣ ଦେଖିବାକୁ ମିଳିଲା । ଅପୂର୍ବ ଏବଂ ସୂକ୍ଷ୍ମ କାରୁକାର୍ଯ୍ୟପୂର୍ଣ୍ଣ । ନିହାଣ ମୁନରେ ପଥରରେ ଏତେ ସୁନ୍ଦର ଓ ସୂକ୍ଷ୍ମ କାରୁକାର୍ଯ୍ୟ ଯେ ସମ୍ଭବ ବୀମ୍‌ସ ବିଶ୍ୱାସ କରିପାରୁନଥିଲେ । ବାସ୍ତବିକ ଆଶ୍ଚର୍ଯ୍ୟ ଓ ଅବିଶ୍ୱସନୀୟ - ସେ ସୂକ୍ଷ୍ମ କାରୁକାର୍ଯ୍ୟସବୁ 'ଜାତକ' କାହାଣୀକୁ ବର୍ଣ୍ଣନା କରୁଥିଲା । ବୌଦ୍ଧମାନଙ୍କର ବିଶ୍ୱାସ ଗୌତମ ଏ ଜନ୍ମରେ ସିନା ବୁଦ୍ଧତ୍ୱପ୍ରାପ୍ତ ହେଲେ, ତେବେ ପୂର୍ବ ଜନ୍ମମାନଙ୍କରେ ମଧ ସେ ଜନହିତପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ବୁଦ୍ଧଙ୍କର ପୂର୍ବ ଜନ୍ମର ତ୍ୟାଗ ଓ ଉତ୍ସର୍ଗର କାହାଣୀକୁ 'ଜାତକ' ଗଳ୍ପ ବୋଲି କୁହାଯାଏ । ତୋରଣର ପଶ୍ଚାତ୍ ଭାଗର ଦୃଶ୍ୟ ଥିଲା ଆହୁରି କଳ୍ପନାତୀତ । ଏଭଳି ଦୃଶ୍ୟ ସେମାନେ ସ୍ୱପ୍ନରେ ମଧ ଚିନ୍ତା କରି ନଥିଲେ । ଘଞ୍ଚ ଲତା, ବୃକ୍ଷ ଶାଖା ଓ ବୁଦା ମଧ୍ୟରୁ ଏକ ବିଶାଳ ବୁଦ୍ଧମୂର୍ତ୍ତି ସେମାନଙ୍କୁ ଅପେକ୍ଷା କରୁଥିଲା । ବୁଦ୍ଧଙ୍କର ଧ୍ୟାନମଗ୍ନ ମୁଦ୍ରା-ମାଟି ଓ ପରିତ୍ୟକ୍ତ ଆବର୍ଜନାରେ ମୂର୍ତ୍ତିଟି କଟି ପର୍ଯ୍ୟନ୍ତ ପୋତିହୋଇ ରହିଥିଲା । ଆକାରରେ ମୂର୍ତ୍ତିଟି ଡାହାଣ ହାତ ପାପୁଲି ଉପରେ ଠିଆହୁଏ, ତେବେ ବହୁ କଷ୍ଟରେ ସେ ମୂର୍ତ୍ତିର ଏତେ ବିଶାଳ ଯେ ବର୍ଣ୍ଣନା କରିବା କଷ୍ଟକର । ଯଦି ଜଣେ ଡେଙ୍ଗା ଲୋକ ମୂର୍ତ୍ତିର ଡାହାଣହାତ ପାପୁଲି ଉପରେ ଠିଆ ହୁଏ, ତେବେ ବହୁ କଷ୍ଟରେ ସେ ମୂର୍ତ୍ତିର କାନ୍ଧକୁ ସ୍ପର୍ଶ କରି ପାରିବ । ବୀମ୍‌ସ ସମ୍ମୋହିତ ହୋଇ ଅନାଇ ରହିଥିଲେ କେତେ ସମୟ । କେତେ ଶ୍ରମ ଓ କେତେ କଳ୍ପନାରୁ ଜାତ ଏ ମୂର୍ତ୍ତି । କେଉଁ ଶିଳ୍ପୀର ସ୍ୱପ୍ନମୟ କଳ୍ପନାରୁ ଏହାର ସୃଷ୍ଟି । କାଳ ଗର୍ଭରେ ସୃଷ୍ଟିର କି ବେଦନାଦାୟକ ପରିଣତି । ବୀମ୍‌ସ ସହଜରେ ଏ ଦୃଶ୍ୟ ହଜମ କରି ପାରୁନଥିଲେ ।

ଉପରୋକ୍ତ ସ୍ଥାନଟି ଯେ ଏକଦା ଏକ ପ୍ରସିଦ୍ଧ ବୌଦ୍ଧବିହାର ଓ ତୀର୍ଥସ୍ଥଳୀ ଥିଲା, ଏଥିରେ ସନ୍ଦେହ କରିବାର କିଛି ନଥିଲା । ବୀମସ୍ ଆହୁରି ମଧ ଲେଖିଛନ୍ତି, ଓଡ଼ିଶାର ଅନ୍ୟାନ୍ୟ ମନ୍ଦିରମାନଙ୍କରେ ମଧ ଦେଖାଯାଏ ଯେ ମୂର୍ତ୍ତିମାନଙ୍କର ନାସିକା

ଭଗ୍ନପ୍ରାୟ । ଅତୀତର ଉତ୍କଳ ଧନଶାଳୀ, ବଳଶାଳୀ ବୀରଭୂମି ରୂପେ ପ୍ରସିଦ୍ଧ ଅର୍ଜନ କରିଥିଲା । ତେଣୁ ବିଭିନ୍ନ ସମୟରେ ବିଦେଶାଗତ ଶତ୍ରୁମାନଙ୍କର ଚକ୍ଷୁଃଶୂଳର କାରଣ ମଧ୍ୟ ଥିଲା । ବିଶେଷକରି ମୁସଲମାନମାନେ ବିଭିନ୍ନ ସମୟରେ ଉତ୍କଳକୁ ବିପର୍ଯ୍ୟୟ ମଧ୍ୟକୁ ଠେଲି ଦେବା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ତା'ର ଚିହ୍ନସବୁ ଭଗ୍ନମନ୍ଦିର ଓ ଭଗ୍ନମୂର୍ତ୍ତିରୁ ଦେଖିବାକୁ ମିଳେ । ହିନ୍ଦୁମାନେ ଭଗ୍ନମୂର୍ତ୍ତି ପୂଜା କରନ୍ତିନି ଏହା ସେମାନଙ୍କୁ ଭଲ ଭାବରେ ଜଣା । ତେଣୁ ଧର୍ମକ୍ଷେତ୍ରରେ ବିପର୍ଯ୍ୟୟ ସୃଷ୍ଟିକରି ଗୋଟିଏ ଜାତିକୁ ମାନସିକ ଭାବେ ଦୁର୍ବଳ କରିଦେବା ପାଇଁ ସେମାନେ ଦେବଦେବୀଙ୍କ ମୂର୍ତ୍ତିକୁ ବିକୃତ କରି ଦେଉଥିଲେ । ନାସିକା ଶରୀରର ଏକ କ୍ଷୁଦ୍ର ତଥା ତୀକ୍ଷ୍ଣ ଅଂଶ ହୋଇଥିବାରୁ ସେମାନଙ୍କୁ ଭାଙ୍ଗିବାକୁ ସହଜ ହେଉଥିଲା । ତେଣୁ ଓଡ଼ିଶାର ବିଭିନ୍ନ ମନ୍ଦିରରେ ନାସିକାହୀନ ମୂର୍ତ୍ତିମାନ ଦେଖାଯାଉଥିଲା । ଆହୁରି ମଧ୍ୟ ସ୍ଥାନୀୟ ଲୋକକଥାରେ ଶୁଣାଯାଏ, କଳାପାହାଡ଼ ମଧ୍ୟ ହିନ୍ଦୁ ଦେବଦେବୀଙ୍କୁ ଆକ୍ରମଣ କରିଥିଲା । କ୍ରୁଦ୍ଧ କଳାପାହାଡ଼ ଗାଈଗୋରୁଙ୍କ ଚମଡ଼ାରେ ବାଜା ନିର୍ମାଣ କରି ବଜାଉଥିଲା । ଗାଈଗୋରୁ ହିନ୍ଦୁ ଧର୍ମରେ ମାତୃବତ୍ ପୂଜା ପାଆନ୍ତି ତେଣୁ ସେଇ ବାଜା ଶୁଣି ସବୁ ମୂର୍ତ୍ତିଙ୍କ ମୁହଁରୁ ନାକ ସବୁ ଆପେ ଆପେ ଗଳି ପଡ଼ିଥିଲା । ଏ ଲୋକକାହାଣୀ ଜନ୍ ବୀମ୍ସଙ୍କୁ କେତେ ପ୍ରଭାବିତ କରିଥିବ, ତା' ଅନୁମାନ କରିବା କଷ୍ଟ ।

ଜଣେ ଭାରତୀୟ ନ ହୋଇ ମଧ୍ୟ ଭାରତୀୟ କଳା ଓ ସ୍ଥାପତ୍ୟର ଉପଯୁକ୍ତ ରକ୍ଷଣାବେକ୍ଷଣର ମହତ୍ତର ଭାବନା ବୀମସଙ୍କ ମନରେ ଆସିଥିଲା । ହୁଏତ ଉତ୍କଳୀୟ ଚାରୁକଳା ତାଙ୍କ ତାଙ୍କ ମନରେ ଗଭୀର ରେଖାପାତ କରିଥିଲା । ଅଯତ୍ନ, ଭୂଲୁଣ୍ଠିତ ବୁଦ୍ଧମୂର୍ତ୍ତିଗୁଡ଼ିକର ଅସହାୟତା ତାଙ୍କର ଅନ୍ତରକୁ ଦୋହଲାଇ ଦେଇଥିଲା । ସେ ଲେଖିଛନ୍ତି, ଏହି ମୂଲ୍ୟବାନ ସ୍ଥାପତ୍ୟଗୁଡ଼ିକର ଉପଯୁକ୍ତ ରକ୍ଷଣାବେକ୍ଷଣ ପ୍ରୟୋଜନ ବୋଲି ମୋର ମନେହେଲା । ସେହି ବିଶାଳ ବୁଦ୍ଧମୂର୍ତ୍ତି ସେଠୁ ଘୁଞ୍ଚାଇବା ଅସମ୍ଭବ ଥିଲା । ତେଣୁ ତାକୁ ସେହି ଅବସ୍ଥାରେ ଛାଡ଼ି ଦିଆଗଲା । ଏଣେତେଣେ ପଡ଼ି ରହିଥିବା ମୂର୍ତ୍ତିଗୁଡ଼ିକରୁ ପ୍ରାୟ ଛଅ ସାତୋଟି ମୂର୍ତ୍ତି ଓ କାରୁକାର୍ଯ୍ୟ ପୂର୍ଣ୍ଣ ତୋରଣଟିର କିଛି ଗୋଟିଏ ବ୍ୟବସ୍ଥା କରିବା କଥା ମୋର ମନକୁ ଆସିଲା । ଫକ୍‌ନରକୁ କହି ଡଙ୍ଗା ମଗାଇଲି । କୁଲିମାନେ ମୂର୍ତ୍ତିଗୁଡ଼ିକୁ ଡଙ୍ଗାରେ ରଖିଦେଇ ପାରିଲେ । କିନ୍ତୁ ତୋରଣଟି ଟେକିବା ଅସମ୍ଭବ ହେଲା । ତେଣୁ ଭାରି ଜିନିଷ ଉଠାଇବା ପାଇଁ ବ୍ୟବହୃତ ଯନ୍ତ୍ର ଅଣାହେଲା ଓ ତୋରଣଟି ତା'ର ସାହାଯ୍ୟରେ ଉଠାଯାଇଥିଲା । ସେତେବେଳର କଟକ ସହରରେ ଚାଉଳିଆଗଞ୍ଜ ଥିଲା ଆପାତତଃ ଉନ୍ନତ ସ୍ଥାନ । କେନାଲ କୂଳର ଏକ ସ୍ଥାନ ବେଶ୍ କିଛି ଉଚ୍ଚ ସରକାରୀ ପଦାଧିକାରୀମାନଙ୍କର

ଆବାସସ୍ଥଳୀ ରୂପେ ପରିଚିତ ମଧ୍ୟ ଥିଲା । ତେଣୁ ସଭ୍ୟ ସମାଜର ଆଖିରେ ପଡ଼ିବା ପାଇଁ ତଥା ଅନ୍ୟ ଅବହେଳିତ ଭାସ୍କର୍ଯ୍ୟପ୍ରତି ଜନ ସଚେତନତା ସୃଷ୍ଟି ହେବାର ଆଶା ରଖି ସେଠାରେ ଥିବା ଏକ ସର୍ବସାଧାରଣ ପାର୍କରେ ସେ ସେହି ତୋରଣ ଓ ମୂର୍ତ୍ତି ସମୂହକୁ ସ୍ଥାପନ କରିଥିଲେ ।

ଉଦୟଗିରିର ସେ ଅନାବିଷ୍କୃତ ଇଲାକାରୁ ମୂର୍ତ୍ତିଗୁଡ଼ିକୁ ଅଯଥାରେ ସ୍ଥାନାନ୍ତର କରିବାର ଇଚ୍ଛା ଯଦିଓ ତାଙ୍କର ନଥିଲା, ତେବେ ଏକ ମହତ୍ ଉଦ୍ଦେଶ୍ୟ ରଖି ସେ ସେହି କାର୍ଯ୍ୟ କରିଥିଲେ । ଯଦିଓ ନିଜ ବିବେକକୁ 'ସେ ଏହା ତାଙ୍କର କବିତା ଉଚିତ କିମ୍ବା ନୁହେଁ' ସେ ବିଷୟ ବହୁବାର ପ୍ରଶ୍ନ କରିଛନ୍ତି, ତେବେ ଉଦ୍ଦେଶ୍ୟ ମହତ୍ ରଖି ଯାହା କରାଯାଏ ତାହା କ୍ଷମଣୀୟ । ତାଙ୍କର ଉଦ୍ଦେଶ୍ୟ ଥିଲା, ଏହିସବୁ ପୁରାତନ ସ୍ଥାପତ୍ୟ, ଏକଦା ଓଡ଼ିଶାରେ ପ୍ରସିଦ୍ଧି ଓ ପ୍ରସାର ଲାଭ କରିଥିବା ବୌଦ୍ଧ ଧର୍ମର ବିଶେଷ ବିବରଣୀ ରୂପେ ଲୋକଲୋଚନକୁ ଆସୁ । ସେ ବିଷୟରେ ବିଶଦ ଗବେଷଣା କରାଯାଉ ଓ ଅତୀତର ହଜିଯାଇଥିବା ଗୌରବକୁ ନେଇ ଓଡ଼ିଶାର ପୁନର୍ବାର ଗର୍ବ କରିବାର ସୁଯୋଗ ପାଉ । କାଳକ୍ରମେ ଧ୍ୱଂସମୁଖୀ ସ୍ଥାପତ୍ୟସବୁ ସୁଚାରୁରୂପେ ସୁରକ୍ଷିତ ହେବାର ଅବସର ସୃଷ୍ଟିହେଉ । ତେଣୁ ସେ ବେଙ୍ଗଲ ଆସିଆଟିକ୍ ସୋସାଇଟି ପତ୍ରିକାରେ ଏହି ବିଷୟରେ ଦୀର୍ଘ ପ୍ରବନ୍ଧ ଲେଖିଥିଲେ ।

ଆଜି ଏତେ ବର୍ଷ ପରେ ଜନ୍ ବୀମ୍‌ସଙ୍କ ଦୂରଦୃଷ୍ଟି କେତେଦୂର କାର୍ଯ୍ୟକାରୀ ହୋଇଛି ତାହା ବିଚାରଯୋଗ୍ୟ । ଓଡ଼ିଶାର ଭାଷାକୁ ବଞ୍ଚାଇ ରଖିବାରେ ସ୍ଥାପତ୍ୟର ରକ୍ଷଣାବେକ୍ଷଣରେ ତାଙ୍କର ଆନ୍ତରିକତା ଆଦର୍ଶ ସ୍ଥାନୀୟ । କେବଳ ଉଦୟଗିରି, ରତ୍ନଗିରି କିମ୍ବା ଲଳିତଗିରି ନୁହେଁ । ଓଡ଼ିଶାର କୋଣ ଅନୁକୋଣରେ ଉତ୍କଳଶିଳ୍ପୀର ବହୁ ସ୍ୱାକ୍ଷର ଅଯତ୍ନ, ଅବହେଳିତ ହୋଇ ଧ୍ୱଂସପ୍ରାୟ । ସେଥି ନିମନ୍ତେ ଜନ ସଚେତନତା ଓ ସରକାରୀ ପ୍ରୋତ୍ସାହନ ଏକାନ୍ତ ଜରୁରୀ ଏଥିରେ ଦ୍ୱିମତ ନାହିଁ । ନ ହେଲେ ଉତ୍କଳୀୟ ଶିଳ୍ପୀର ମାନସନିଃସୃତ ପ୍ରସ୍ତର-କବିତା ଦିନେ ସମ୍ପୂର୍ଣ୍ଣ ନିଶ୍ଚିହ୍ନ ହୋଇଯିବ ଏଥିରେ ସନ୍ଦେହ ନାହିଁ ।

ଉଦୟଗିରି ସମ୍ପର୍କୀୟ ଏହି ପ୍ରାଚୀନତମ ବିବରଣୀ ବୀମ୍‌ସଙ୍କ (Memories of a Bengal Civilian) ଆତ୍ମଜୀବନୀ ଆଧାରରେ ପ୍ରସ୍ତୁତ କରାଯାଇଛି ।

(ସୌଜନ୍ୟ - ବାଲିଯାତ୍ରା ସ୍ମରଣିକା - ୨୦୦୮)



# ଭାରତୀୟ ଭାଷାବିଜ୍ଞାନକୁ ଜନ୍ ବୀମ୍ସଙ୍କ ଅବଦାନ

ଡକ୍ଟର କୃତ୍ତିବାସ ଷଡ଼ଙ୍ଗୀ

ବ୍ରିଟିଶ୍ ଶାସନ କାଳରେ ଇଂଲଣ୍ଡରୁ ଭାରତକୁ ପ୍ରଶାସନିକ ଭାବରେ ଆସିଥିବା ଜନ୍ ବୀମ୍ସ(John Beames) ଭାରତୀୟ ଭାଷା ଓ ସାହିତ୍ୟ ଆଲୋଚନାରେ ମନୋନିବେଶ ଦ୍ୱାରା ଜୀବନକୁ ସରସସୁନ୍ଦର କରିବା ପୂର୍ବକ ଭାଷାବିଜ୍ଞାନ କ୍ଷେତ୍ରରେ ଅନନ୍ୟ ଓ ଅମଳିନ ଖ୍ୟାତିର ଅଧିକାରୀ ହୋଇପାରିଛନ୍ତି । ଭାଷାବିଜ୍ଞାନ ସମ୍ପର୍କୀୟ ବିଭିନ୍ନ ଗ୍ରନ୍ଥ ଅଧ୍ୟୟନକୁ ଅବସର ବିନୋଦନ ବୋଲି ଭାବୁଥିବା ବୀମ୍ସ ଭାରତର ପଞ୍ଜାବ, ବିହାର, ବଙ୍ଗଳା ଓ ଓଡ଼ିଶାରେ ବିଭିନ୍ନ ସମୟରେ ବିଭିନ୍ନ ପ୍ରଶାସନିକ ଦାୟିତ୍ୱରେ ରହିବା କାଳରେ ବିଭିନ୍ନ ଭାଷା ଶିକ୍ଷା କରିବାର ସୁଯୋଗ ଲାଭ କରିଥିଲେ । ବହୁଭାଷାବିଦ୍ ଜନ୍‌ବୀମ୍ସ ଭାଷାର ଅନ୍ତଃପ୍ରକୃତି ନିରୀକ୍ଷଣ ଓ ତା'ର ଗତିଧାରା ପର୍ଯ୍ୟାଲୋଚନାରେ ବେଶ୍ ଦକ୍ଷ ଥିଲେ ।

ଊନବିଂଶ ଶତାବ୍ଦୀର ସପ୍ତମ ଦଶନ୍ଧିରେ ଓଡ଼ିଆ ଭାଷାବିରୋଧୀ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ''ଉଡ଼ିୟା ସ୍ୱତନ୍ତ୍ର ଭାଷା ନୟ'' ପୁସ୍ତକରେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ଅସ୍ୱୀକାର ପୂର୍ବକ ତାହାର ବିଲୋପ ପାଇଁ ଯେଉଁ ସ୍ୱରପ୍ରକାଶ ପାଇଥିଲା, ତାହା ବିରୁଦ୍ଧରେ ମତପ୍ରଦାନ ପୂର୍ବକ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟକୁ ପ୍ରମାଣ କରିବା କ୍ଷେତ୍ରରେ ଏସିଆଟିକ୍ ସୋସାଇଟି ପତ୍ରିକାରେ ପ୍ରକାଶିତ ଜନ୍‌ବୀମ୍ସଙ୍କ ଲେଖା ଅତ୍ୟନ୍ତ ପାଣ୍ଡିତ୍ୟପୂର୍ଣ୍ଣ । ସେ କାନ୍ତିଚନ୍ଦ୍ରଙ୍କ ପୁସ୍ତକକୁ 'ଭାଷାତତ୍ତ୍ୱ ଆଲୋଚନା ଶୂନ୍ୟ' ଭାବରେ ଅଭିହିତ କରିବା ପୂର୍ବକ ଓଡ଼ିଆ ଭାଷାର ପ୍ରାଚୀନତାକୁ ପ୍ରମାଣ କରିଥିବା ତାତ୍ପର୍ଯ୍ୟପୂର୍ଣ୍ଣ । ଓଡ଼ିଆ ଭାଷାର ବ୍ୟାକରଣ ନିୟମ ; ଓଡ଼ିଆ ଭାଷାରେ ବ୍ୟବହୃତ କ୍ରିୟା, ବିଭକ୍ତି ଓ ସର୍ବନାମ ; ଓଡ଼ିଆ ଭାଷାର ଉଚ୍ଚାରଣ ପଦ୍ଧତି ପ୍ରଭୃତି ଅବଲମ୍ବନରେ ସେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରିବା ସହିତ କାନ୍ତିଚନ୍ଦ୍ରଙ୍କ ଯୁକ୍ତିକୁ ଅସାର ଓ ଭିତ୍ତିହୀନ ବୋଲି ପ୍ରମାଣ କରିଛନ୍ତି । ସେ ସର୍ବଦା ଓଡ଼ିଆ ଭାଷାର ମହନୀୟତା ପ୍ରତିପାଦନ ପାଇଁ ତତ୍ପର ହୋଇ ଉଠିଛନ୍ତି ।

ଓଡ଼ିଆ ଭାଷାର ଉନ୍ନତି ପାଇଁ ଫକୀରମୋହନଙ୍କ ବାଲେଶ୍ୱରରେ ଗଠିତ 'ଉତ୍କଳ ଭାଷା ଉନ୍ନତି ବିଧାୟିନୀ ସଭା'(୧୮୬୭ ଖ୍ରୀ.)ର ପ୍ରେରଣା ଦାତା ଭାବରେ ଜନ୍ ବୀମ୍ସଙ୍କ ଭୂମିକା ଅନନ୍ୟ । ଓଡ଼ିଆ ଭାଷାର ସୁରକ୍ଷା ଓ ବିକାଶ ପାଇଁ ହୋଇଥିବା ଆନ୍ଦୋଳନରେ ଗୌରୀଶଙ୍କର ରାୟ, ଫକୀରମୋହନ ସେନାପତି, ରାଧାନାଥ ରାୟ, ଡକ୍ଟର ଇ. ରୋର୍ ଓ ରେଭେନ୍‌ସା ସାହେବଙ୍କ ଭୂମିକା ଅପେକ୍ଷା ଜନ୍‌ବୀମ୍ସଙ୍କ ଭୂମିକା

ଅଧିକ ଗୁରୁତ୍ୱପୂର୍ଣ୍ଣ । ତାଙ୍କୁ ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନର ନାୟକ ଭାବରେ ଅଭିହିତ କରାଯାଇପାରେ ।

ଓଡ଼ିଆ ଭାଷାବିଲୋପ ଚକ୍ରାନ୍ତର ଅନ୍ୟତମ ସଦସ୍ୟ ବଙ୍ଗୀୟ ଉମାଚରଣ ହାଲଦାର(କଟକର ତତ୍କାଳୀନ ଡେପୁଟି ସ୍କୁଲ ଇନ୍‌ସ୍‌ପେକ୍ଟର) ଓଡ଼ିଶାରେ ଶିକ୍ଷାର ଅବନତିର କାରଣ ଦର୍ଶାଇବାକୁ ଯାଇ ଶିକ୍ଷା କାଉନ୍‌ସିଲ୍‌କୁ ରିପୋର୍ଟରେ ଲେଖିଥିଲେ ଯେ - ଓଡ଼ିଶାର ବିଦ୍ୟାଳୟ ଗୁଡ଼ିକରେ ବଙ୍ଗଳା ଓ ଓଡ଼ିଆ ଉଭୟ ଭାଷାର ପ୍ରଚଳନ ଯୋଗୁଁ ଶିକ୍ଷାର ବିକାଶରେ ବାଧା ଉପୁଜୁଛି । ଓଡ଼ିଆ ଭାଷାରେ ବ୍ୟାକରଣ ଓ ପାଠ୍ୟପୁସ୍ତକ ନଥିବାରୁ ବଙ୍ଗଳା ଭାଷାର ବ୍ୟାକରଣ ଓ ପାଠ୍ୟପୁସ୍ତକ ଓଡ଼ିଶାର ସ୍କୁଲଗୁଡ଼ିକରେ ପ୍ରଚଳିତ ହେବା ଉଚିତ । ସେତେବେଳେ ଫକୀରମୋହନ ଓଡ଼ିଶାର ସ୍କୁଲଗୁଡ଼ିକରେ ଓଡ଼ିଆ ଭାଷା ମାଧ୍ୟମରେ ଶିକ୍ଷା ଦିଆଯିବା ସପକ୍ଷରେ ବ୍ରିଟିଶ୍ ସରକାରଙ୍କ ନିକଟରେ ଦାବୀ ଉପସ୍ଥାପନ ପୂର୍ବକ ପ୍ରାୟ ପାଞ୍ଚଶହ ଲୋକଙ୍କ ଦସ୍ତଖତ ସମ୍ବଳିତ ଏକ ଦରଖାସ୍ତ ଜନ୍‌ବୀମ୍‌ସଙ୍କ ଜରିଆରେ କମିଶନରଙ୍କ ପାଖକୁ ପଠାଇଲେ । ଜନ୍‌ବୀମ୍‌ସ ସେଥିରେ ଓଡ଼ିଆ ଭାଷା ସପକ୍ଷରେ ସୁଚିନ୍ତିତ ସୁପାରିଶ ପ୍ରଦାନ କରିଥିବାରୁ ସରକାରୀ ନିର୍ଦ୍ଦେଶ ଆସିଥିଲା ଯେ - ଓଡ଼ିଶାର ସମସ୍ତ ସ୍କୁଲରୁ ବଙ୍ଗଳାଭାଷା ସମ୍ପୂର୍ଣ୍ଣଭାବେ ଉଠାଇଦିଆଯାଉ ଏବଂ ଓଡ଼ିଆ ଭାଷାର ବହୁଳ ପ୍ରଚାର ପାଇଁ ଅଧିକ ବିଦ୍ୟାଳୟ ସ୍ଥାପିତ ହେଉ । ତାହା ଓଡ଼ିଆ ଭାଷାର ବିଲୋପ ଚକ୍ରାନ୍ତକୁ ପଣ୍ଡ କରିବା ପାଇଁ ବେଶ୍ ଖୋରାକ୍ ଯୋଗାଇଛି ।

ଭାଷାବିଜ୍ଞାନକୁ ଜନ୍‌ବୀମ୍‌ସ୍‌ଙ୍କ ଅବଦାନ ଉଲ୍ଲେଖଯୋଗ୍ୟ । ରେଭରେଣ୍ଡ ରବର୍ଟ କାଡ୍‌ୱେଲ୍ (Rev. Robert CaldWell)ଙ୍କ ରଚିତ ଦକ୍ଷିଣ - ଭାରତୀୟ ଦ୍ରାବିଡ଼ ଭାଷା ପରିବାର ଅନ୍ତର୍ଭୁକ୍ତ ବିଭିନ୍ନ ଭାଷାର ତୁଳନାତ୍ମକ ବ୍ୟାକରଣ ଗ୍ରନ୍ଥ 'A Comparative Grammar of the Dravidian or South Indian Family of Languages' (1956)କୁ ସେ ଭଲ ଭାବରେ ପଢ଼ିଛନ୍ତି ।

ସୂଚନାଯୋଗ୍ୟ ଯେ ଜନ୍ ବୀମ୍‌ସ ଓଡ଼ିଶାର ବାଲେଶ୍ୱର ଜିଲ୍ଲାର କଲେକ୍ଟର ଥିବା ସମୟରେ ଓଡ଼ିଆ ଭାଷା ସମ୍ପର୍କରେ ଜ୍ଞାନଆହରଣ କରିବା ପାଇଁ ଆଗ୍ରହୀ ହୋଇଥିଲେ । ସେଥିପାଇଁ ସେ ଫକୀରମୋହନ ସେନାପତିଙ୍କ ସାହାଯ୍ୟ ନେଇଥିଲେ । ଫକୀରମୋହନ ସ୍ୱୀୟ 'ଆତ୍ମଜୀବନ ଚରିତ'ରେ ଏ ସମ୍ପର୍କରେ ଲେଖିଛନ୍ତି ଯେ - ୧୮୬୬ ଖ୍ରୀଷ୍ଟାବ୍ଦରେ ବାଲେଶ୍ୱର ଜିଲ୍ଲାର କଲେକ୍ଟର ଜନ୍ ବୀମ୍‌ସ ଜଣେ ଅସାଧାରଣ ପଣ୍ଡିତଭାବରେ ତତ୍କାଳୀନ ସିଭିଲିଆନ୍ ମଣ୍ଡଳୀ ଓ ଦେଶୀୟ ଶିକ୍ଷିତ ସମାଜରେ ବେଶ୍ ଖ୍ୟାତି ଅର୍ଜନ କରିଥିଲେ । ଏଗାରଟି ଭାଷାରେ ସେ ଦକ୍ଷ ଥିଲେ । ସେତେବେଳକୁ ସେ ଆର୍ଯ୍ୟଭାଷା

ସମ୍ବନ୍ଧୀୟ ତୁଳନାତ୍ମକ ବ୍ୟାକରଣ ଗ୍ରନ୍ଥୟ ଲେଖିବାରେ ବ୍ୟସ୍ତଥିଲେ । ତାଙ୍କ ପଞ୍ଚଭାଷିକ ବ୍ୟାକରଣ ଲେଖାବେଳେ ସଂସ୍କୃତ, ବଙ୍ଗଳା ଓ ଓଡ଼ିଆ ଏହି ତିନିଭାଷାରେ ଜ୍ଞାନଥିବା ଜଣେ ପଣ୍ଡିତଙ୍କର ଆବଶ୍ୟକ ହେବାରୁ ହାଲମ୍ ସାହେବ ଫକୀରମୋହନଙ୍କୁ ନେଇ ବୀମ୍‌ସଙ୍କ ସହିତ ସାକ୍ଷାତ୍ କରାଇ ଦେଇଥିଲେ । ସେହି ପ୍ରଥମ ସାକ୍ଷାତ୍‌ରେ ସେ ଫକୀରମୋହନଙ୍କୁ ପଚାରିଥିବା ବ୍ୟାକରଣଗତ ପ୍ରଶ୍ନର ଉତ୍ତର ତାଙ୍କ ଆଶାନୁରୂପ ହୋଇଥିବାରୁ ସେଗୁଡ଼ିକୁ ସେ ତାଙ୍କ ବ୍ୟାକରଣରେ ସ୍ଥାନ ଦେଇଛନ୍ତି । (ଆତ୍ମଜୀବନ ଚରିତ, ଫ୍ରେଣ୍ଡସ୍ ପବ୍ଲିଶର୍ସ, ଷଷ୍ଠ ସଂସ୍କରଣ, ୧୯୯୫, ପୃ-୨୫-୨୬) ଫକୀରମୋହନ ଯେଉଁ ପଞ୍ଚଭାଷିକ ବ୍ୟାକରଣ ଜନ୍ ବୀମ୍‌ସ ଲେଖିବା କଥା ସୂଚାଇଛନ୍ତି ପ୍ରକୃତରେ ତାହା ସପ୍ତଭାଷିକ ତୁଳନାତ୍ମକ ବ୍ୟାକରଣ । ଫକୀରମୋହନଙ୍କ ସହାୟତାରେ ଓଡ଼ିଆ ଭାଷାର ବ୍ୟାକରଣ ସମ୍ପର୍କରେ ଜ୍ଞାନଆହରଣ ପାଇଁ ଉଦ୍ୟମ କରିଛନ୍ତି । ଭାଷାଶିକ୍ଷାପାଇଁ ସେ ବ୍ୟାକରଣ ଗ୍ରନ୍ଥ ଓ ଅଭିଧାନ ଅପେକ୍ଷା ଲୋକକଥିତ ଭାଷାକୁ ଅଧିକ ପ୍ରାଧାନ୍ୟ ଦେଇଥିବା ସେ ନିଜେ ସ୍ୱୀକାର କରିଛନ୍ତି । (A Comparative Grammar of the Modern Aryan Languages of India, Vol.– I; P – IX)

ଜନ୍ ବୀମ୍‌ସଙ୍କ ଭାଷାତତ୍ତ୍ୱ ସମ୍ପର୍କିତ ରଚନାଗୁଡ଼ିକ ହେଉଛି : –

(୧) 'Outlines of Indian Philology' (1867) ଗ୍ରନ୍ଥ,

(୨) "On the Relation of Uriya to other Modern Aryan Languages" (1870) ଗବେଷଣାତ୍ମକ ପ୍ରବନ୍ଧ,

(୩) 'A Comparative Grammar of Modern Aryan Languages of India ' Vol. –I (1872) ଗ୍ରନ୍ଥ,

(୪) 'A Comparative Grammar of Modern Aryan Languages of India' Vol. II (1875) ଗ୍ରନ୍ଥ ଓ

(୫) 'A Comparative Grammar of Modern Aryan Languages of India, Vol – III' (1879) ଗ୍ରନ୍ଥ ।

'Outlines of Indian Philology' ଗ୍ରନ୍ଥରେ ସେ ଭାରତ-ଇରାନୀୟ ଉପଶାଖା ସମନ୍ୱିତ ଭାରତୀୟ ଜର୍ମାନ୍ ଭାଷାପରିବାର (Indo-German Linguistic Family)ଓ ଶ୍ୟାମଦେଶୀୟ, ହିମାଳୟାଞ୍ଚଳୀୟ, ବର୍ମାଦେଶୀୟ, କୋଲ୍ ଓ ଦ୍ରାବିଡ଼ ଉପଶାଖା ସମନ୍ୱିତ ତୁରାନୀୟ ଭାଷା ପରିବାର ସମ୍ପର୍କରେ ବର୍ଣ୍ଣନା କରିଛନ୍ତି । ଭାରତୀୟ ଉପଶାଖାର ଭାଷା ମଧ୍ୟରେ ସେ ହିନ୍ଦୀ, ଓଡ଼ିଆ, ବଙ୍ଗଳା, ମରାଠୀ, ଗୁଜୁରାଟୀ ଓ ପଞ୍ଜାବୀ ଭାଷାକୁ ଅନ୍ତର୍ଭୁକ୍ତ କରିଥିବା ସ୍ଥଳେ ମୈଥିଳୀ, ଭୋଜପୁରୀ, ମଗହୀ, କୌଶଳୀ, ବ୍ରଜ, ରାଜପୁତ୍ରୀ,

ବୁନ୍ଦେଲୀ ଓ କନୌଜୀ ପ୍ରଭୃତି ଭାଷାକୁ ହିନ୍ଦୀଭାଷାର ଉପଭାଷା ଭାବରେ ଗ୍ରହଣ କରିଛନ୍ତି । ଏତଦ୍‌ବ୍ୟତୀତ ଉକ୍ତ ଗ୍ରନ୍ଥରେ ସେ ନେପାଳୀ, ଆସାମୀ, କାଶ୍ମୀରୀ ଓ ଡୋଗ୍ରୀ ଭାଷା ଉପରେ ମଧ୍ୟ ଆଲୋକପାତ କରିବାକୁ ଭୁଲିନାହାନ୍ତି ।

ସଂକ୍ଷେପରେ କହିଲେ ଆଲୋଚ୍ୟ ଗ୍ରନ୍ଥରେ ସେ ଓଡ଼ିଆଭାଷାର ସ୍ୱାତନ୍ତ୍ୟ ପ୍ରତିପାଦନ କରିଛନ୍ତି । ତତ୍‌ସହିତ ଭାଷା ଓ ଉପଭାଷା ମଧ୍ୟରେ ଥିବା ପାର୍ଥକ୍ୟ ଓ ସମ୍ପର୍କର ବିଶ୍ଳେଷଣପୂର୍ବକ ଓଡ଼ିଆ ଆଦୌ ଏକ ଉପଭାଷା ନୁହେଁ ଏବଂ ଏହା ଏକ ସ୍ୱତନ୍ତ୍ର ଉନ୍ନତଭାଷା ବୋଲି ବଳିଷ୍ଠ ଯୁକ୍ତି ପ୍ରକାଶ କରିଛନ୍ତି ।

ରାଜେନ୍ଦ୍ରଲାଲ ମିତ୍ର ଓ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ ଓଡ଼ିଆ ଭାଷା ବିରୋଧରେ ଦେଇଥିବା ମନ୍ତବ୍ୟଗୁଡ଼ିକୁ ଖଣ୍ଡନ କରିବା ପାଇଁ ଓ ଓଡ଼ିଆ ଭାଷାର ସ୍ୱତନ୍ତ୍ୟ ଦର୍ଶାଇବାପାଇଁ ୧୮୭୦ ଖ୍ରୀଷ୍ଟାବ୍ଦରେ 'Proceedings of Asiatic Society' ଗ୍ରନ୍ଥରେ ପ୍ରକାଶିତ ତାଙ୍କ "On the Relation of Uriya to the other Modern Aryan Languages" ପ୍ରବନ୍ଧ ଅଭିପ୍ରେତ ।

ତିନିଖଣ୍ଡରେ ପ୍ରକାଶିତ "A Comparative Grammar of the Modern Aryan Languages"ଗ୍ରନ୍ଥରେ ସେ ଭାରତୀୟ ଆର୍ଯ୍ୟଭାଷାଗୁଡ଼ିକର ମୂଳ ଉତ୍ସ ନିର୍ଣ୍ଣୟ ବା ପ୍ରତ୍ନଭାରତୀୟ ଆର୍ଯ୍ୟାଭାଷା ସମ୍ପର୍କୀୟ ଗବେଷଣା ପାଇଁ ମନବଳାଇ ନାହାନ୍ତି । ଅଥଚ ହିନ୍ଦୀ, ଓଡ଼ିଆ, ବଙ୍ଗଳା, ପଞ୍ଜାବୀ, ଗୁଜୁରାଟୀ, ସିନ୍ଧୀ ଓ ମରାଠୀ ଏହି ସାତଟି ଆଧୁନିକ ଭାରତୀୟ ଆର୍ଯ୍ୟଭାଷାର ବ୍ୟାକରଣକୁ ତୁଳନାତ୍ମକ ଭାବରେ ଦର୍ଶାଇଛନ୍ତି । ଏତେ ବିସ୍ତୃତ ତୁଳନାତ୍ମକ ବ୍ୟାକରଣ ଗ୍ରନ୍ଥ ପୂର୍ବ-ପର ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଥିରେ ସେ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ, ରାଜେନ୍ଦ୍ରଲାଲ ମିତ୍ର ଓ ଉମାଚରଣ ହାଲଦାରଙ୍କ ଓଡ଼ିଆ ଭାଷାର ବିଲୋପପାଇଁ ପ୍ରଦତ୍ତ ସମସ୍ତ ଯୁକ୍ତିକୁ ଖଣ୍ଡନପୂର୍ବକ ଓଡ଼ିଆ ଭାଷାର ସ୍ୱାତନ୍ତ୍ୟ ଓ ବିଳକ୍ଷତାକୁ ପ୍ରତିପାଦନ କରିଥିବା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

ନିମ୍ନରେ ଜନ୍ ବୀମ୍‌ସଙ୍କ ଭାଷାତାତ୍ତ୍ୱିକ ବିଚାରର ବିଭିନ୍ନ ଦିଗ ଉପରେ ଆଲୋକପାତ କରାଯାଇପାରେ ।

### ଓଡ଼ିଆ ଭାଷାର ଉତ୍ପତ୍ତି ଓ ଅନ୍ୟଭାଷା ସହିତ ତା'ର ସମ୍ପର୍କ :

ଜନ୍ ବୀମ୍‌ସ ସ୍ୱୀୟ 'A Comparative Grammar of the Modern Aryan Languages of India' ଗ୍ରନ୍ଥରେ ହିନ୍ଦୀ,ଓଡ଼ିଆ, ବଙ୍ଗଳା, ପଞ୍ଜାବୀ, ଗୁଜୁରାଟୀ, ସିନ୍ଧୀ ଓ ମରାଠୀ ଏହି ସାତଟି ଆଧୁନିକ ଭାରତୀୟ ଆର୍ଯ୍ୟଭାଷାର ତୁଳନାତ୍ମକ ବିକାଶକ୍ରମ ଓ ବ୍ୟାକରଣ ନିୟମ ସମ୍ପର୍କରେ ଆଲୋକପାତ କରିବା କ୍ରମରେ ଉକ୍ତ ଭାଷାଗୁଡ଼ିକ ସଂସ୍କୃତଭାଷାରୁ ଜନ୍ମଲାଭ କରିଥିବା ଦର୍ଶାଇଛନ୍ତି । ଏହି ସାତୋଟି ଭାଷା ମଧ୍ୟରେ ଅନ୍ୟତମ

ଓଡ଼ିଆଭାଷାର ଜନନୀ ଭାବରେ ସେ ସଂସ୍କୃତକୁ ଅଭିହିତ କରିଛନ୍ତି । ସେଥିପାଇଁ ଓଡ଼ିଆ ଭାଷାର ଇତିହାସ ପ୍ରସଙ୍ଗରେ ସେ ପ୍ରାୟ ସବୁ ଓଡ଼ିଆ ଧ୍ୱନି, ଶବ୍ଦ, ପ୍ରକୃତି ପ୍ରତ୍ୟୟ, ବିଭକ୍ତି ପ୍ରଭୃତିର ମୂଳକୁ ସଂସ୍କୃତରୁ ଅନୁସନ୍ଧାନ କରିଛନ୍ତି । ଓଡ଼ିଆ ଭାଷାରେ ବିହାରୀ ଓ ହିନ୍ଦୀଭାଷାର ପ୍ରଭାବକୁ ସେ ସ୍ୱୀକାର କରିଛନ୍ତି । ଓଡ଼ିଆ ଭାଷା ସହିତ ବଙ୍ଗଳାଭାଷାର ଯେଉଁ ସାମ୍ୟ ପରିଲକ୍ଷିତ ହୁଏ, ବିହାରୀ ହିନ୍ଦୀ ଭାଷା ସହିତ ବଙ୍ଗଳାର ସେହି ସାମ୍ୟ ଲକ୍ଷଣୀୟ । ଖ୍ରୀଷ୍ଟୀୟ ୧୦ମ ଶତାବ୍ଦୀରୁ ଓଡ଼ିଆ ଭାଷାରେ ସଂସ୍କୃତ ଭାଷାର ପ୍ରଭୂତ ପ୍ରଭାବ ଫଳରେ ଯେଉଁ ତତ୍ସମ ଶବ୍ଦର ବହୁଳ ବ୍ୟବହାର ପରିଲକ୍ଷିତ ହୋଇଛି, ତାହାକୁ ବୀମ୍‌ସ ଓଡ଼ିଆ ଭାଷାର ଦାରିଦ୍ର୍ୟ ଭାବରେ ଚିହ୍ନିତ କରିଛନ୍ତି । ତାଙ୍କ ମତରେ ଉପକୂଳବର୍ତ୍ତୀ ଅଞ୍ଚଳର ଓଡ଼ିଆ ଭାଷାରେ ସଂସ୍କୃତ ଭାଷାର ପ୍ରଭାବ କ୍ଷୀଣ । ଉଭୟ ଉପକୂଳ ଓ ଗଡ଼ଜାତ ଅଞ୍ଚଳର ଭାଷାରେ ଆର୍ଯ୍ୟେତର ଓ ଅଷ୍ଟ୍ରିକ୍ ଭାଷାର ବହୁଳ ପ୍ରଭାବ ପଡ଼ିଥିବା ସ୍ଥଳେ ଓଡ଼ିଆ ଭାଷାରେ ଆର୍ଯ୍ୟେତର ଭାଷାର ପ୍ରଭାବ ଅପେକ୍ଷା ଆର୍ଯ୍ୟଭାଷାର ପ୍ରଭାବ ଆପାତତଃ ଅଧିକ ।

ପୁନଶ୍ଚ ଆଧୁନିକ ଆର୍ଯ୍ୟଭାଷାରେ ସଂସ୍କୃତ ଶବ୍ଦର ବହୁଳ ବ୍ୟବହାର ଫଳରେ ଭାଷା ପଛେଇଯିବ, ତା'ର ଉନ୍ନତି ସାଧିତ ହୋଇପାରିବନାହିଁ । ସେଥିପାଇଁ ଭାଷାରେ ସଂସ୍କୃତ ତତ୍ସମ ଶବ୍ଦ ଅପେକ୍ଷା ଜନସାଧାରଣଙ୍କ କଥିତ ସହଜ ସୁବୋଧ୍ୟ ଶବ୍ଦ ଯଥେଷ୍ଟ ପରିମାଣରେ ସ୍ଥାନପାଇବା ଆବଶ୍ୟକ । ଦେଶୀୟ ଭାଷାରେ ତତ୍ସମ ଶବ୍ଦର ପ୍ରୟୋଗକୁ ଗୁରୁତ୍ୱ ଦେଇ ମିଶନାରୀମାନଙ୍କ ଧର୍ମପୁସ୍ତକ ରଚନା ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରିଛନ୍ତି । ଓଡ଼ିଆ ଭାଷାରେ ବ୍ୟବହୃତ ତଦ୍‌ଭବ ଶବ୍ଦକୁ ଖାଣ୍ଟିଜୀବନ୍ତ ଦେଶୀୟ ଶବ୍ଦଭାବରେ ସମ୍ମାନ ଦେବା ସହିତ ସେ ପ୍ରାକୃତ ଭାଷାକୁ ମଧ ଓଡ଼ିଆ ଭାଷାର ଜନନୀ ଭାବରେ ବିବେଚନା କରିଛନ୍ତି । ଅଷ୍ଟମରୁ ତ୍ରୟୋଦଶ ଶତାବ୍ଦୀ ମଧରେ ଓଡ଼ିଆ ଭାଷାର ପୂର୍ଣ୍ଣାଙ୍ଗ ବିକାଶ ସମ୍ଭବ ହୋଇନଥିଲା ଏବଂ ପ୍ରାକୃତ ଭାଷାର ବିଶେଷ ପ୍ରଭାବରେ ଚତୁର୍ଦ୍ଦଶ ଶତାବ୍ଦୀରେ ଏହାର ପୂର୍ଣ୍ଣାଙ୍ଗ ବିକାଶ ସାଧିତ ହୋଇଥିବା ସେ ସ୍ୱୀକାର କରିଛନ୍ତି । (A Comparative Grammar of the Modern Aryan Languages of India, Vol -II, P–120) ଓଡ଼ିଆ ଭାଷାର ଉତ୍ପତ୍ତି/ସୃଷ୍ଟି ସମ୍ପର୍କରେ ଜନ୍ ବୀମ୍‌ସଙ୍କ ମତ ସର୍ବସମ୍ମତ ହେଲେ ମଧ ତାହା ତାଙ୍କର ଭାଷାତତ୍ତ୍ୱପ୍ରତି ବିଶେଷ କରି ଓଡ଼ିଆ ଭାଷାତତ୍ତ୍ୱ ପ୍ରତି ଆଗ୍ରହର ପରିଚାୟକ ।

## ଭାରତୀୟ ଭାଷାର ଧ୍ୱନି ସମ୍ପର୍କୀୟ ବିଚାର :

ଭାଷାର କ୍ଷୁଦ୍ରତମ ଏକକ ହେଉଛି ଧ୍ୱନି । ଧ୍ୱନି ବିଜ୍ଞାନ ଭାଷାବିଜ୍ଞାନର ଏକ ବିଭାଗ, ଯେଉଁଥିରେ ବିଭିନ୍ନ ଧ୍ୱନିର ଅଧ୍ୟୟନ ବା ବିଶ୍ଳେଷଣ କରାଯାଇଥାଏ । ଭାରତୀୟ

ଭାଷାଗୁଡ଼ିକର ବିଭିନ୍ନ ଧ୍ୱନି ସମ୍ପର୍କରେ ଜନ୍ ବୀମ୍‌ସ ଗଭୀର ଅଧ୍ୟୟନ କରିଥିଲେ । ତୁଳନାତ୍ମକ ଭାଷାବିଜ୍ଞାନ ପଦ୍ଧତି ଭିତ୍ତିରେ ସେ ଏହି ଭାଷାଗୁଡ଼ିକର ସ୍ୱରଧ୍ୱନି ଓ ବ୍ୟଞ୍ଜନଧ୍ୱନି ସମ୍ପର୍କରେ ବିଶ୍ଳେଷଣ ପୂର୍ବକ ଆଲୋକପାତ କରିଛନ୍ତି ।

**ସ୍ୱରଧ୍ୱନି :** ଓଡ଼ିଆ ଭାଷାରେ ଅଧିକାଂଶ ସଂସ୍କୃତ ସ୍ୱରଧ୍ୱନି ଅପରିବର୍ତ୍ତିତ ରହିଥିବା ସ୍ଥଳେ ବଙ୍ଗଳା, ହିନ୍ଦୀ ପ୍ରଭୃତି ଭାଷାରେ ଏଗୁଡ଼ିକ ଉଣାଅଧିକେ ପରିବର୍ତ୍ତିତ ହୋଇଯାଇଥିବା ତାଙ୍କ ମତ । ତେବେ ତାଙ୍କର ଏହିମତ ସମ୍ପୂର୍ଣ୍ଣ ତ୍ରୁଟିରହିତ ନୁହେଁ । ସେଥିପାଇଁ କେତୋଟି ଉଦାହରଣ ଦିଆଯାଇପାରେ ।

ପ୍ରଥମତଃ ଜନ୍ ବୀମ୍‌ସଙ୍କ ମତରେ ବଙ୍ଗଳା, ହିନ୍ଦୀ ପ୍ରଭୃତି ଭାଷାରେ 'ଅ' ସ୍ୱରଧ୍ୱନି ବହୁ ସ୍ଥଳରେ ବ୍ୟଞ୍ଜନ ଧ୍ୱନିରୁ ଲୋପପାଉଥିବା ସ୍ଥଳେ ଓଡ଼ିଆ ଭାଷାରେ ଏହା ଲୋପ ନ ହୋଇ ସେହିପରି ରହିଥାଏ । ଏହା କେବଳ ପଦ ବା ଶବ୍ଦର ଶେଷରେ ଥିବା ବ୍ୟଞ୍ଜନଧ୍ୱନିଯୁକ୍ତ ସ୍ୱରଧ୍ୱନି କ୍ଷେତ୍ରରେ ଲକ୍ଷଣୀୟ । ଓଡ଼ିଆ ଭାଷାର ବହୁସ୍ଥଳରେ ଆଦି ଓ ମଧ୍ୟସ୍ୱରଲୋପ ଘଟୁଥିବା ପରିଦୃଷ୍ଟ ହୋଇଥାଏ ;ଯଥା-ଅଲାବୁ > ଲାଉ, ଅଭ୍ୟନ୍ତର > ଭିତର, ଭଗିନୀ > ଭଗ୍ନୀ, ପରଶୁରାମ > ପର୍ଶୁରାମ । ଓଡ଼ିଆ ଭାଷାରେ ଉଚ୍ଚାରଣବେଳେ ଅନ୍ୟ ଭାଷାପରି ପ୍ରାନ୍ତବ୍ୟଞ୍ଜନ ସହିତ ଯୁକ୍ତ 'ଅ' ସ୍ୱରଧ୍ୱନିର ଲୋପ ସାଧନ କେତେକ ସ୍ଥଳରେ ଦେଖିବାକୁ ମିଳେ ; ଯଥା : ଉଚିତ > ଉଚିତ୍, ବାସ୍ତବିକ > ବାସ୍ତବିକ୍ ।

ଦ୍ୱିତୀୟତଃ ସେ କହିଛନ୍ତି ଯେ ସଂସ୍କୃତ ସ୍ୱରଧ୍ୱନି 'ର' ବଙ୍ଗଳା ଓ ହିନ୍ଦୀ ପ୍ରଭୃତି ଭାଷାରେ 'ରି' ଭାବରେ ଉଚ୍ଚାରିତ ହେଉଥିବା ସ୍ଥଳେ ଓଡ଼ିଆ ଓ ଗୁଜୁରାଟୀ ଭାଷାରେ 'ରୁ' ଭାବରେ ଉଚ୍ଚାରିତ ହୋଇଥାଏ । ଓଡ଼ିଆ ଭାଷାରେ ପ୍ରଚଳିତ ତତ୍ସମ ଶବ୍ଦଗୁଡ଼ିକରେ ଏପରି ଉଚ୍ଚାରଣ ଶୁଣିବାକୁ ମିଳୁଥିଲେ ହେଁ ସେହି ଭାଷାରେ ବ୍ୟବହୃତ ବହୁ ତଦ୍‌ଭବ ଶବ୍ଦ ବିଶେଷ କରି ବହୁ ପ୍ରାଚୀନ ଓଡ଼ିଆ ଶବ୍ଦରେ ଏହାର ବ୍ୟତିକ୍ରମ ଦେଖିବାକୁ ମିଳେ । ଏପରିକି ବଙ୍ଗଳା ଓ ହିନ୍ଦୀ ପରି ଓଡ଼ିଆ ଭାଷାର କେତେକ ସ୍ଥଳରେ ଉକ୍ତ 'ର'ସ୍ୱରଧ୍ୱନିକୁ 'ରି' ଭାବରେ ଉଚ୍ଚାରଣ କରାଯାଇଥାଏ ; ଯଥା-କୃତ୍ତିବାସ > କ୍ରିତ୍ତିବାସ, ଋଣ > ରିଣ ।

ତୃତୀୟତଃ ତାଙ୍କ ମତ ହେଉଛି - ବଙ୍ଗଳା ଭାଷାର ବହୁସ୍ଥଳରେ 'ଅ'କୁ 'ଓ' ଭାବରେ ଉଚ୍ଚାରଣ କରାଯାଉଥିବା ସ୍ଥଳେ ଓଡ଼ିଆ ଭାଷାରେ ଏହାର ଦୃଷ୍ଟାନ୍ତ ବିରଳ । କିନ୍ତୁ ତାଙ୍କର ଏହି ମତ ଅଯଥାର୍ଥ । ଓଡ଼ିଆ ଭାଷାରେ ବହିତ୍ର > ବୋଇତ, ପ୍ରବାଳକ > ପୋହଳା ତାହାର ଉଦାହରଣ । ପୁନଶ୍ଚ ବଙ୍ଗଳା ଭାଷାରେ ଐ > ଏଇ ଏବଂ ଔ > ଓଉ ହେଉଥିବା ବେଳେ ଓଡ଼ିଆ ଭାଷାରେ ତାହାର ବିଲକ୍ଷଣ ଦେଖାଯିବା ସମ୍ପର୍କରେ ସେ ଯେଉଁ ମତ ଦେଇଛନ୍ତି, ତାହା ମଧ୍ୟ ସର୍ବତ୍ର ପ୍ରଯୁଜ୍ୟ ନୁହେଁ । କେବଳ ଉତ୍ତର ବାଲେଶ୍ୱର ଅଞ୍ଚଳରେ ବ୍ୟବହୃତ ଓଡ଼ିଆ ଭାଷାରେ ଏପରି ଉଚ୍ଚାରଣ ପରିଲକ୍ଷିତ ହୋଇଥାଏ ।

ଆଧୁନିକ ଭାରତୀୟ ଆର୍ଯ୍ୟଭାଷାର ବ୍ୟଞ୍ଜନଧ୍ୱନି ସମ୍ପର୍କରେ ଜନ୍ ବୀମ୍ସ ଉଲ୍ଲେଖ କରିଛନ୍ତି ଯେ ହିନ୍ଦୀରେ ପ୍ରତ୍ୟେକ ଅବର୍ଗ୍ୟ 'ୱ' ବର୍ଗ୍ୟ 'ବ' ପରି ଲିଖିତ ଓ ଉଚ୍ଚାରିତ ହୋଇଥାଏ । ପ୍ରକୃତରେ ଦେଖିବାକୁ ଗଲେ ହିନ୍ଦୀରେ ଅବର୍ଗ୍ୟ 'ୱ'(व) ଓ ବର୍ଗ୍ୟ 'ବ' (ब) ପାଇଁ ସ୍ୱତନ୍ତ୍ର ଲିପି ଏବଂ ଉଚ୍ଚାରଣ ରହିଛି । କିନ୍ତୁ ଓଡ଼ିଆ ଓ ବଙ୍ଗଳାରେ ଉଭୟ ଧ୍ୱନିପାଇଁ ଗୋଟିଏ ଲିପି ରହିଛି ଓ ଉଭୟର ଉଚ୍ଚାରଣ ଅଧିକାଂଶତଃ ଏକ । ତେଣୁ ଏ ଉଭୟ ବ୍ୟଞ୍ଜନ ଧ୍ୱନି ସମ୍ପର୍କରେ ଜନ୍ ବୀମ୍ସଙ୍କ ମତ ଗ୍ରହଣୀୟ ନୁହେଁ ।

ତାଙ୍କ ମତରେ ହିନ୍ଦୀଭାଷାରେ ବହୁସ୍ଥଳରେ ଉଭୟ ଉଚ୍ଚାରଣ ଓ ଲିଖନରେ ଯ (य) ସ୍ଥାନରେ 'ଜ'(ज) ବ୍ୟବହୃତ ହୋଇଥାଏ । ଅଧିକ ରକ୍ଷଣଶୀଳ ଓଡ଼ିଆ ଭାଷାରେ ଲିଖନରେ 'ଯ' କୌଣସିଠାରେ 'ଜ' ଭାବରେ ବ୍ୟବହୃତ ହୋଇନାହିଁ ; ହେଲେ ଉଚ୍ଚାରଣରେ ସବୁଠାରେ 'ଜ' ହୋଇଛି । ଜନ୍‌ବୀମ୍ସଙ୍କ ଏହି ମତ ସମ୍ପୂର୍ଣ୍ଣ ଠିକ୍ ନୁହେଁ । ହିନ୍ଦୀ ଭାଷାରେ 'ଯ' (य) ସବୁଠାରେ 'ଜ' ଭାବରେ ବ୍ୟବହୃତ ହୋଇନାହିଁ । ଏହାର ଶୁଦ୍ଧ ଉଚ୍ଚାରଣ ଯ (ୟ) ମଧ୍ୟ ହିନ୍ଦୀରେ ଲକ୍ଷଣୀୟ : ଯଥା : ଯୁଧିଷ୍ଠିର, ଯମ ପ୍ରଭୃତି । ହିନ୍ଦୀଭାଷାର ଲିଖନରେ 'ଯ' ସବୁଠାରେ 'ଜ' ହୁଏ ନାହିଁ । ଓଡ଼ିଆରେ 'ଯ' ବହୁସ୍ଥାନରେ 'ଜ' ହୋଇଛି । ପେଯ (ପେୟ) > ପେଜ, ଯାମଳ > ଜାମଳ ତାହାର ଉଦାହରଣ । ଏପରିକି ଉଚ୍ଚାରଣରେ ଏହା ସବୁଠାରେ 'ଜ' ନ ହୋଇ 'ୟ' ମଧ୍ୟ ହୋଇଥାଏ ; ଯଥା - ଶୟନ, ନୟନ, ଭୟ, ଲୟ, କ୍ଷୟ ପ୍ରଭୃତି ।

ଆଧୁନିକ ଭାରତୀୟ ଆର୍ଯ୍ୟଭାଷା ଅନ୍ତର୍ଭୁକ୍ତ ଓଡ଼ିଆ ଓ ମରାଠୀ ଭାଷାରେ ବ୍ୟବହୃତ ହେଉଥିବା 'ଳ୍' ଧ୍ୱନି ଅଷ୍ଟ୍ରୋ-ଏସିଆଟିକ୍ ତଥା ଦ୍ରାବିଡ଼ ଭାଷାର ପ୍ରଭାବ ହୋଇଥିବା ତାଙ୍କର ଯେଉଁ ଅନୁମାନ ତାହା ଯଥାର୍ଥ । ସେ ମଧ୍ୟ ଦର୍ଶାଇଛନ୍ତି ଯେ ଓଡ଼ିଆ ଭାଷାରେ ଲ > ନ, ନ > ଲ ଭାବରେ ବ୍ୟବହୃତ ହୋଇଥାଏ । ଲାଇ > ନାଇ, ନଡ଼ିଆ > ଲଡ଼ିଆ ଉଦାହରଣରୁ ତାଙ୍କ ମତର ଯଥାର୍ଥତା ବାରି ହୋଇପଡ଼େ । ସେ ଅନୁଧ୍ୟାନ କରିଛନ୍ତି ଯେ ଓଡ଼ିଆ ଭାଷାର ଉଚ୍ଚାରଣ ଓ ଲିଖନରେ ଅନେକତ୍ର ଷ୍ଣ > ଷ୍ଟଂ ବା ଷ୍ଣ > ଷ୍ଟଁ ଭାବେ ବ୍ୟବହୃତ ହୋଇଥାଏ । କୃଷ୍ଣ > କୃଷ୍ଟଂ/କୃଷ୍ଟଁ ଓ ବିଷ୍ଣୁ > ବିଷ୍ଟୁଂ/ବିଷ୍ଟୁଁ ତାହାର ଦୃଷ୍ଟାନ୍ତ । ଏତଦ୍‌ବ୍ୟତୀତ ଉଭୟ ଓଡ଼ିଆ ଓ ବଙ୍ଗଳା ଭାଷାରେ ମୁଷ୍ଟିମେୟ ଲୋକଙ୍କୁ ଛାଡ଼ିଦେଲେ ବହୁଲୋକ 'ଶ' ଓ 'ଷ'ର ପ୍ରକୃତ ଉଚ୍ଚାରଣ ନ କରି ତାକୁ 'ସ' ଭାବରେ ଉଚ୍ଚାରଣ କରୁଥିବା ସେ ଦର୍ଶାଇଛନ୍ତି । ଏସବୁରୁ ଜନ୍ ବୀମ୍ସଙ୍କ ଧ୍ୱନିତାତ୍ତ୍ୱିକ ବିଦ୍‌ବତ୍ତାର ଯଥାର୍ଥ ପରିଚୟ ମିଳିଥାଏ ।

## ଶବ୍ଦବିଜ୍ଞାନ ଓ ରୂପବିଜ୍ଞାନ ସମ୍ବନ୍ଧୀୟ ବିଚାର :

ଶବ୍ଦ ବିଜ୍ଞାନ ଓ ରୂପବିଜ୍ଞାନ ଉଭୟ ଭାଷାବିଜ୍ଞାନର ଗୋଟିଏ ଗୋଟିଏ ବିଭାଗ । ଶବ୍ଦବିଜ୍ଞାନରେ କୌଣସି ଭାଷାରେ ପ୍ରଚଳିତ ଶବ୍ଦ ଓ ତା'ର ସାମଗ୍ରିକ ଅଧ୍ୟୟନ କରାଯାଇଥାଏ । ରୂପବିଜ୍ଞାନ ବା ପଦବିଜ୍ଞାନ (Morphology) ରେ ବିଭିନ୍ନ ଦୃଷ୍ଟିରୁ କୌଣସି ଭାଷାରେ ବ୍ୟବହୃତ ପଦ ବା ରୂପର ଅଧ୍ୟୟନ କରାଯାଇଥାଏ । ଶବ୍ଦ ପ୍ରତ୍ୟୟ ଯୁକ୍ତ ହୋଇ ବାକ୍ୟରେ ବ୍ୟବହୃତ ହେଲେ ତାହାକୁ ପଦ କୁହାଯାଏ । ଶବ୍ଦ ଓ ପଦ ମଧ୍ୟରେ ସମ୍ବନ୍ଧ ଥାଏ ।

ସ୍ମର୍ତ୍ତବ୍ୟ ଯେ, ଆଧୁନିକ ଭାରତୀୟ ଆର୍ଯ୍ୟଭାଷାଗୁଡ଼ିକର ତୁଳନାତ୍ମକ ବିକାଶଧାରା ଦର୍ଶାଇବା ଜନ୍‌ବୀମ୍‌ସଙ୍କ ଭାଷାତାତ୍ତ୍ୱିକ ଅଧ୍ୟୟନର ଉଦ୍ଦେଶ୍ୟ ଥିଲା । ଆଧୁନିକ ଭାରତୀୟ ଆର୍ଯ୍ୟଭାଷାଗୁଡ଼ିକ ସଂସ୍କୃତରୁ ବିଭିନ୍ନ ପ୍ରାକୃତ ଭାଷା ମଧ୍ୟ ଦେଇ କ୍ରମବିବର୍ତ୍ତନ ଫଳରେ ସୃଷ୍ଟି ହୋଇଥିବା ତାଙ୍କ ମତ । ଓଡ଼ିଆ ଏକ ଆଧୁନିକ ଭାରତୀୟ ଆର୍ଯ୍ୟଭାଷା ହୋଇଥିବାରୁ ଅନ୍ୟ ଆଧୁନିକ ଭାରତୀୟ ଆର୍ଯ୍ୟଭାଷା ସହିତ ତା'ର ଅନେକ ସାମଞ୍ଜସ୍ୟ ଥିବା ସ୍ୱୀକାର୍ଯ୍ୟ । ଏହି ବିଚାରଧାରା ଆଧାରରେ ସେ 'A Comparative Grammar of the Modern Aryan Languages of India ' ଗ୍ରନ୍ଥ ଓ 'On the Relation of Uriya to the other Modern Aryan Languages, ଗବେଷଣାତ୍ମକ ପ୍ରବନ୍ଧ ରଚନା କରିଛନ୍ତି ।

ତାଙ୍କ ଉପରୋକ୍ତ ଗ୍ରନ୍ଥରୁ ଜଣାଯାଏ ଯେ ଆଧୁନିକ ଭାରତୀୟ ଆର୍ଯ୍ୟଭାଷାଗୁଡ଼ିକରେ ବ୍ୟବହୃତ ଦେଶଜ ଶବ୍ଦାବଳୀର ମୂଳ ସେ ଦ୍ରାବିଡ଼ କିମ୍ବା ଅଷ୍ଟ୍ରିକ୍ ପରି ଆର୍ଯ୍ୟେତର ଭାଷା ବଦଳରେ ସଂସ୍କୃତ ବା ପ୍ରାକୃତରେ ଖୋଜିଛନ୍ତି । (Page10-11) ଏହି କ୍ରମରେ ଓଡ଼ିଆ ଭାଷାର ଶବ୍ଦତତ୍ତ୍ୱ ଓ ରୂପତତ୍ତ୍ୱ ବା ପଦତତ୍ତ୍ୱ ସମ୍ପର୍କରେ ସେ ଗଭୀର ଅନୁଶୀଳନ ପୂର୍ବକ ଓଡ଼ିଆ ଭାଷାର ବିଶେଷ୍ୟ, ସର୍ବନାମ, କ୍ରିୟା ପ୍ରଭୃତିର ପ୍ରକୃତି (root) ଓ ତତ୍‌ସହିତ ଯୁକ୍ତ ହେଉଥିବା ପ୍ରତ୍ୟୟ(derivational affixes) ଓ ବିଭକ୍ତି ପ୍ରତ୍ୟୟ (inflectional affixes)ର ବ୍ୟୁତ୍ପତ୍ତିକ୍ରମ ଦର୍ଶାଇଛନ୍ତି ।

ଜନ୍ ବୀମ୍‌ସଙ୍କ ମତରେ ଓଡ଼ିଆ ୨ୟା ଓ ୪ର୍ଥୀ ବିଭକ୍ତିର 'କୁ' ଚିହ୍ନ ସଂସ୍କୃତ 'କକ୍ଷେ'ରୁ ଉତ୍ପନ୍ନ । ତାଙ୍କ ପୂର୍ବରୁ କାଲ୍‌ଡ଼ୱେଲ ତେଲୁଗୁ ଭାଷାର 'କୁ' ବିଭକ୍ତି ଚିହ୍ନକୁ ଓଡ଼ିଆ 'କୁ' ଚିହ୍ନର ମୂଳ ଭାବରେ ଚିହ୍ନିତ କରିଥିଲେ । ବୀମ୍‌ସ ତାଙ୍କ ମତକୁ ତ ଗ୍ରହଣ କରିନାହାନ୍ତି ; ବରଂ ସଂସ୍କୃତ 'କକ୍ଷେ'କୁ ତେଲୁଗୁ 'କୁ' ଚିହ୍ନର ମୂଳଭାବରେ ଚିହ୍ନିତ କରିଛନ୍ତି । ସେହିପରି ଓଡ଼ିଆ ପଞ୍ଚମୀ ବିଭକ୍ତି ଚିହ୍ନ 'ରୁ'ର ମୂଳଭାବରେ ସେ ସଂସ୍କୃତ 'ଆତ୍' ବିଭକ୍ତି ଚିହ୍ନକୁ ସ୍ୱୀକାର କରିଛନ୍ତି ।

ପୁନଶ୍ଚ ଓଡ଼ିଶାରେ ମରହଟ୍ଟା ଶାସନ (୧୭୫୧ ଖ୍ରୀ. - ୧୮୦୩ ଖ୍ରୀ.) କାଳରେ ବହୁ ମରହଟ୍ଟା ଶବ୍ଦ (ମରାଠୀଶବ୍ଦ) ଓଡ଼ିଆ ଭାଷାରେ ସ୍ଥାନ ପାଇଥିବା ତାଙ୍କ ଅନୁମାନ । ସେଥିପାଇଁ ସେ ମରାଠୀ ଭାଷାର 'ଆଇତ' ପ୍ରତ୍ୟୟ ଯୁକ୍ତ ହୋଇଥିବା କେତେକ ଓଡ଼ିଆ ଶବ୍ଦର ଉଦାହରଣ ଦେଇଛନ୍ତି । ମରାଠୀ ଭାଷାର ଚଢ଼ାଇତ, ଢାଳାୟିତ ଶବ୍ଦରେ ଯୁକ୍ତ ହୋଇଥିବା 'ଆଇତି' ପ୍ରତ୍ୟୟ ଯୁକ୍ତ ହୋଇ ଓଡ଼ିଆ ଭାଷାର ଖଣ୍ଡାଇତ, ଗୋଛାଏତ, ସେବାଇତ, ଟିକାଇତ ଓ ଗନ୍ତାଇତ ଶବ୍ଦ ଗଠିତ ହୋଇଥିବା ତାଙ୍କ ଅନୁମାନ । ପ୍ରକୃତରେ ଓଡ଼ିଆ 'ଆଇତ'ର ମୂଳ ହୋଉଛି 'ଆୟତ୍ତ' । 'ଆଇତ' ପ୍ରତ୍ୟୟ ନ ହୋଇ ଏକ ସମାସଗତ ପଦ ହୋଇଥିବାରୁ ଜନ୍ ବୀମ୍‌ସଙ୍କ ଏହିମତ ଅଯଥାର୍ଥ ମନେହୁଏ ।

ଶବ୍ଦ ବିଜ୍ଞାନ ଓ ରୂପବିଜ୍ଞାନକୁ ଏହାହିଁ ହେଉଛି ଜନ୍‌ବୀମ୍‌ସଙ୍କ ଅବଦାନ ।

**ଲିପିବିଜ୍ଞାନ ସମ୍ବନ୍ଧୀୟ ବିଚାର :** ଭାଷାବିଜ୍ଞାନର ଅନ୍ୟତମ ଶାଖା ଲିପିବିଜ୍ଞାନରେ ଲିପିର ବ୍ୟୁତ୍ପତ୍ତି, ଆକାର ଓ ବୈଶିଷ୍ଟ୍ୟର ଅଧ୍ୟୟନ କରାଯାଇଥାଏ । ଓଡ଼ିଆ ଲିପିର ବର୍ତ୍ତୁଳତ୍ୱ ସମ୍ପର୍କରେ ଜନ୍ ବୀମ୍‌ସ ତିନୋଟି କାରଣ ଦର୍ଶାଇଛନ୍ତି । ପ୍ରଥମତଃ ବର୍ତ୍ତୁଳାକାର ଆର୍ଯ୍ୟେତର ଦ୍ରାବିଡ଼ଲିପିରୁ ସୃଷ୍ଟ ତେଲୁଗୁଲିପିର ପ୍ରଭାବ ଯୋଗୁଁ ଓଡ଼ିଆ ଲିପି ବର୍ତ୍ତୁଳାକାର ହୋଇଥିବା ମତ । ଏହି କ୍ରମରେ ସେ ତେଲୁଗୁ, ତାମିଲ୍, ମାଲାୟାଲମ୍, ସିଂହଳୀ ଓ ବର୍ମୀ ଲିପି ବର୍ତ୍ତୁଳାକାର ହୋଇଥିବା ସୂଚାଇଛନ୍ତି । ଦ୍ୱିତୀୟତଃ ନର୍ମଦା ଉପତ୍ୟକାର ବିଭିନ୍ନ ସ୍ଥାନରେ ପରିଦୃଷ୍ଟ ଖୋଦିତ ଶିଳାଲେଖର ଲିପିର ଉପରିଭାଗରେ ବସ୍ତୁରେଖା ତଥା ଆନୁଭୌମିକ(horizontal)ରେଖା ଥିବା ସ୍ଥଳେ କୃଷ୍ଣା ନଦୀ ଉପତ୍ୟକାରେ ପରିଦୃଷ୍ଟ ଶିଳାଲେଖଗୁଡ଼ିକର ଲିପିର ଉପରିଭାଗରେ ବର୍ତ୍ତୁଳରେଖା ରହିଛି । ଏହି ଲିପିର ନିମ୍ନ ଭାଗରେ ଆର୍ଯ୍ୟଲିପିର ପ୍ରଭାବ ଓ ଉପରିଭାଗରେ ଦ୍ରାବିଡ଼ ଲିପିର ପ୍ରଭାବ ରହିଥିବା ତାଙ୍କ ସ୍ୱୀକାରୋକ୍ତି । ତାଙ୍କ ମତରେ ଏହି ଲିପି ପରି ଉଭୟ ଆର୍ଯ୍ୟ ଓ ଆର୍ଯ୍ୟେତର ପ୍ରଭାବରୁ ଓଡ଼ିଆ ଲିପି ବର୍ତ୍ତୁଳାକାର ହୋଇଛି । ତୃତୀୟତଃ ପ୍ରାଚୀନକାଳରୁ ଓଡ଼ିଶାର କବି, ଲେଖକ ଓ ଲେଖନକାରମାନେ ତାଳପତ୍ରରେ ଲୌହଲେଖନୀ ସାହାଯ୍ୟରେ ଲେଖିଆସୁଛନ୍ତି । ଲୌହଲେଖନୀରେ ତାଳପତ୍ର ଉପରେ ତ୍ରିକୋଣକାର ବା ଚତୁଷ୍କୋଣକାର ଅକ୍ଷର ଲେଖିଲେ ଉକ୍ତ ପତ୍ର ଚିରିଯିବାର ଆଶଙ୍କା ଥିବାରୁ ଓଡ଼ିଆ ଲିପିଗୁଡ଼ିକ ବର୍ତ୍ତୁଳାକାର ହୋଇଛି ।

ଓଡ଼ିଆ ଲିପି ବର୍ତ୍ତୁଳାକାର ହେବା ସମ୍ପର୍କରେ ସାର୍ ହଗ୍‌ମ୍ୟାକ୍ ଫର୍ସନ (Sir Hug Mc Pherson) ଦେଇଥିବା ମତ ସହିତ ଜନ୍ ବୀମ୍‌ସଙ୍କ ମତର ସାମ୍ୟ ରହିଛି । ଜନ୍ ବୀମ୍‌ସଙ୍କ ମତରେ ଭାରତୀୟ ଭାଷାର ଲିପି ଅପେକ୍ଷା ଓଡ଼ିଆ ଲିପି ଅଧିକ କୁଟିଳ

ଓ କଦାକାର । ଓଡ଼ିଆର ବହୁ ଅକ୍ଷର ମଧ୍ୟରେ ଏତେ ସାମଞ୍ଜସ୍ୟ ରହିଛି ଯେ ତାହା ମଧ୍ୟରେ ଥିବା ପ୍ରଭେଦ ସହଜରେ ବାରିହୁଏନା ; ଯଥା : ଚ, ର (କେବଳ ଗୋଟିଏ ତେରଛା ଗାରର ପ୍ରଭେଦ) ; ୯ (ଏକାର), ଚ (ବେଳେବେଳେ ଏକାଭଳି ଦେଖାଯାଏ); ତ,ଢ (ହାତଲେଖା ଲିପିରେ ପ୍ରଭେଦ ବାରିବା କଷ୍ଟକର); ଡ, ଉ (କେବଳ ଗୋଟିଏ ତେରଛାଗାରର ପ୍ରଭେଦ); ଗ, ଖ ; ଚା, ରା, ଓ ଶ, ଣ ପ୍ରଭୃତି ।

ଏଥିରୁ ଜନ୍‌ବୀମ୍‌ସଙ୍କ ଲିପିବିଜ୍ଞାନ ସମ୍ପର୍କୀୟ ଦୃଷ୍ଟିଭଙ୍ଗୀର ପରିଚିୟ ମିଳେ ।

## ଆଞ୍ଚଳିକ ଓଡ଼ିଆ ଭାଷା ସମ୍ପର୍କୀୟ ମତ :

ଉତ୍ତରାଞ୍ଚଳୀୟ(ବାଲେଶ୍ୱର) ଓଡ଼ିଆ ସମ୍ପର୍କରେ ଜନ୍ ବୀମ୍‌ସଙ୍କ ମତ ତାତ୍ପର୍ଯ୍ୟପୂର୍ଣ୍ଣ । ବାଲେଶ୍ୱର ଅଞ୍ଚଳର ଓଡ଼ିଆ ଭାଷାରେ ବଙ୍ଗଳା ପ୍ରଭାବ ଯୋଗୁଁ କିସ (କଅଣ) ଓ କରିତେ (କରିବାକୁ) ଶବ୍ଦର ବ୍ୟବହାର କରାଯାଉଛି । ଉତ୍ତର ଓଡ଼ିଶାର ସୁବର୍ଣ୍ଣରେଖା ନଦୀ ଉପତ୍ୟକା, ହିଜଲି ଉପକୂଳ ଓ ମେଦିନାପୁର ଅଞ୍ଚଳର ବହୁ ଲୋକ ଓଡ଼ିଆ ଓ ବଙ୍ଗଳା ମିଶ୍ରିତ ଏକ ଭାଷାର ବ୍ୟବହାର କରୁଥିବା ସେ ଦର୍ଶାଇଛନ୍ତି । ବିଭିନ୍ନ ଗଡ଼ଜାତ ଅଞ୍ଚଳରେ ବ୍ୟବହୃତ ଓଡ଼ିଆ ଭାଷାର ଓଡ଼ିଆଧ୍ୱନି ଓ ରୂପରେ ବୈଷମ୍ୟ ଥିବା ତାଙ୍କ ମତ । ପ୍ରାମାଣିକ ଓଡ଼ିଆ ଭାଷା ଓ ଆଞ୍ଚଳିକ ଭାଷା ମଧ୍ୟରେ କେତେକ ବିଭିନ୍ନତା ଥିଲେ ହେଁ ପ୍ରାୟତଃ ସେଗୁଡ଼ିକରେ ମୌଳିକତା ଲକ୍ଷଣୀୟ ବୋଲି ସେ ମତ ଦେଇଛନ୍ତି ।

ଭାରତୀୟ ଭାଷାତତ୍ତ୍ୱ କ୍ଷେତ୍ରରେ ପ୍ରସିଦ୍ଧି ଅର୍ଜନ କରିଥିବା ମୁଷ୍ଟିମେୟ ବିଦ୍ୱାନ୍‌ଙ୍କ ମଧ୍ୟରୁ ଜନ୍ ବୀମ୍‌ସଙ୍କ ନାମ ଅବିସ୍ମରଣୀୟ। ଓଡ଼ିଆଭାଷାର ମୌଳିକ ଅସ୍ତିତ୍ୱକୁ ସେ ସର୍ବୋଚ୍ଚ ସରକାରୀ ସ୍ତରରେ ପ୍ରତିପାଦନ କରିବା ସହିତ ଏହାକୁ ଏକ ବଳିଷ୍ଠ କଥିତ ଓ ସାହିତ୍ୟିକ ଭାଷାଭାବରେ ଦେଶବିଦେଶରେ ପରିଚିତ କରାଇଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଆ ଭାଷାର ଭିତ୍ତି, ସ୍ଥିତି ଓ ସମସ୍ୟା ସମ୍ପର୍କରେ ଇଂରେଜୀ ଭାଷାରେ ଆଲୋଚନା ପୂର୍ବକ ସେ ବିଶ୍ୱଦରବାରରେ ଓଡ଼ିଆ ଭାଷାକୁ ପରିଚିତ କରାଇଛନ୍ତି । ଓଡ଼ିଆ ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ ତାଙ୍କ ଗବେଷଣାଧର୍ମୀ ରଚନାଗୁଡ଼ିକ ବେଶ୍ ଉଚ୍ଚମାନର । ସର୍ବୋପରି ଆଧୁନିକ ଭାରତୀୟ ଆର୍ଯ୍ୟଭାଷାର ଧ୍ୱନି, ଶବ୍ଦ, ରୂପ(ପଦ), ଲିପି ଓ ଆଞ୍ଚଳିକରୂପ ସମ୍ପର୍କରେ ତାଙ୍କ ବ୍ୟୁତ୍ପତ୍ତି ଓ ବିଚାରଧାରା ଯୋଗୁଁ ସେ ଜଣେ ବଳିଷ୍ଠ ଭାଷାବିଜ୍ଞାନୀ ଭାବରେ ପ୍ରସିଦ୍ଧି ଅର୍ଜନ କରିଛନ୍ତି । ଭାଷାବିଜ୍ଞାନକୁ ତାଙ୍କର ଏହି ଅବଦାନ ଅନନ୍ୟ ଓ ଅବିସ୍ମରଣୀୟ ।



# D.O. LETTER TO
## PHAKIRMOHAN SENAPATY IN ORIYA

This is the only specimen of Beames' Oriya letter available to us. Published possibly in the issue of 16 January, 1872 of ***Baleswar Sambad Bahika*** which is not available now, it was reproduced by ***Utkal Dipika*** in its issue of 27 January, 1872. This is in response to an editorial comment appeared in ***Baleswar Sambad Bahika*** proposing to enhance the town tax on card and carriage to meet the expenses in repairing the roads of Balasore, being caused to damage by them. Rejecting the proposal Beames says that as the amount of town tax being imposed on the people is too high there should not be any further increase of this tax until a legislation in this regard is introduced. Rather the expenditure which is being incurred by the Municipality towards the salary of the constables, may be reduced by the deployment of choukidars who would accept less salary to guard the town.. This savings may be diverted for the repair works of the roads.

Instead of formally addressing to the editor, this is a D.O. letter by Beames dated 29 December, 1871 to Phakirmohan Senapaty intended to be published in his newspaper. This is an indication of Beames intimacy and close relationship with Phakirmohan.

ବୋଧଦାୟିନୀ ପତ୍ରିକା ସମ୍ପାଦକ ଶ୍ରୀଯୁକ୍ତ ବାବୁ ଫକିରମୋହନ ସେନାପତି

ସୁଚରିତେଷୁ,

ଉକ୍ତ ପତ୍ରିକାସଂଯୁକ୍ତ ବାଲେଶ୍ୱର ସମ୍ବାଦବାହିକା ନାମ୍ନୀ ପାକ୍ଷିକ ପତ୍ରିକାର ଅବଗତ ହେଲୁ ଯେ, ବାଲେଶ୍ୱର ନଗରାନ୍ତର୍ଗତ ସଡ଼କମାନ ଘୋଡ଼ାଗାଡ଼ି ଓ ବଳଦଗାଡ଼ିର ଯିବା ଆସିବାରେ ଅଧିକ କ୍ଷୟ ହେଉଥିବାର ତାହା ନିର୍ମାଣ ଅଥବା ସଂସ୍କାରର ବ୍ୟୟ ଉତ୍ତମରୂପେ ନିର୍ବାହ ସକାଶେ ଘୋଡ଼ାଗାଡ଼ି ଓ ବଳଦଗାଡ଼ି ଉପରେ ଟାଉନ୍ ଟେକ୍ସ

ବସାଇବାର ପ୍ରାର୍ଥନା କରିଅଛି ; 'କିନ୍ତୁ ହଜୁରର ଏମନ୍ତ ବିବେଚନା ହୁଏ ଯେ, ଏ ନଗରସ୍ଥ ନିବାସିମାନଙ୍କ ପ୍ରତି ଟାଉନ୍ ଟେକ୍ସ ଯେ ପରିମାଣେ ନିର୍ଦ୍ଧାର୍ଯ୍ୟ ହୋଇଅ ତଦତିରିକ୍ତ ଆଉ କୌଣସି ପ୍ରକାର ଟେକ୍ସ ଧାର୍ଯ୍ୟ କରିବା ଅନୁଚିତ; ଅତଏବ ହଜୁର ଅଭିପ୍ରାୟ, ଯେ ପର୍ଯ୍ୟନ୍ତ ପ୍ରଧାନ ଅଥବା କ୍ଷୁଦ୍ର ନଗର ସମ୍ବନ୍ଧୀୟ ଟାଉନ୍ ଟେକ୍ସ ନୂତନ ବିଧି ଭାରତବର୍ଷ ବା ବଙ୍ଗଦେଶ ବ୍ୟବସ୍ଥାପକ ସଭାର ପ୍ରଚାରିତ ହୋଇନାହିଁ ସେ ପର୍ଯ୍ୟନ୍ତ ଏ ନଗରର ଟାଉନ୍ ଟେକ୍ସ ଆଉ କୌଣସି ପ୍ରକାରେ ବୃଦ୍ଧି କରାଯିବ ନାହିଁ

ଶାନ୍ତିରକ୍ଷକମାନଙ୍କ ପ୍ରାପ୍ୟ ବେତନାଦି ବ୍ୟୟ ନିର୍ବାହ ନିମନ୍ତେ ନିର୍ଦ୍ଧାରି ଟାଉନ୍ ଟେକ୍ସନର ଅଧିକାଂଶ ବ୍ୟୟ ହେଉଥିବାର ତାହାଦ୍ୱାରା ନଗରରର ସଡ଼କା ନିର୍ମାଣ ଅଥବା ସଂସ୍କାର କାର୍ଯ୍ୟ ଯେ ନିର୍ବାହ ହୋଇପାରେ ନାହିଁ ଯଥାର୍ଥ ; କିନ୍ତୁ ପୂର୍ବେ ଏ ନଗରରେ ମାସିକ ଟ ୩ ଙ୍କା ବେତନରେ ଯେଉଁ ଚୌକିଦାରମାନେ ନିଯୁକ୍ତ ଥିଲେ ସେମାନଙ୍କ ପରିଧେୟାଦି - ଯଥାମାନ୍ୟ ଥିଲା, ଏବଂ ସେମାନେ ସ୍ୱସ୍ୱ କର୍ତ୍ତବ୍ୟ କା ବିଶେଷ ଯତ୍ନପୂର୍ବକ ଉତ୍ତମରୂପେ ନିର୍ବାହ କରିଥିଲେ । ସେମାନଙ୍କୁ ରହିତ କରି ନଗ ଚୌକିପହରା କର୍ମ ନିର୍ବାହ ସକାଶେ କନଷ୍ଟବଲମାନଙ୍କୁ ନିଯୁକ୍ତ କରାଯିବାର ଏକ ଏ ବ୍ୟକ୍ତିକ ମାସିକ ବେତନ ଟ ୫ ଓ ୬ ଙ୍କା ଲେଖାଏଁ ନିର୍ଦ୍ଧାର୍ଯ୍ୟ ହୋଇଅଛି । ଏଥି ନାଗରିକ ପୋଲିସ୍‌ର ବ୍ୟୟ ଯେ ପୂର୍ବାପେକ୍ଷା ଦୁଇଗୁଣ ଅଧିକ ହୋଇଅଛି ଏ କଥ କହିବା ବାହୁଲ୍ୟ । ତଥାଚ ସେମାନେ କଳାକୁରୁତା ଓ ରଙ୍ଗା ପାଗ ଘେନି ଏପରି ଗର୍ବ ହୋଇଅଛନ୍ତି ଯେ ସେମାନଙ୍କ କର୍ତ୍ତବ୍ୟ କର୍ମରେ କିଛିମାତ୍ର ଦେଖାଯାଉନାହିଁ ; ଅତଏ ନଗରର ଚୌକି ପହରା କର୍ମ ନିର୍ବାହ ନିମନ୍ତେ କନଷ୍ଟେବଲ ନ ରଖି ପୂର୍ବବତ୍ ଚୌକିଦା ରଖିବା ସକାଶେ ରିପୋର୍ଟ କରାଯାଇଅଛି । ଭରସା, ତାହା ଅନୁମୋଦିତ ହେଲେ ପୋଲିସ୍‌ର ବ୍ୟୟ ମଧ୍ୟ ହ୍ରାସ ହୋଇପାରିବ ଓ ସେଥିର ଉଦ୍‌ବୃତ୍ତ ଟଙ୍କାଦ୍ୱାରା ଅନ୍ୟାନ୍ୟ ଆବଶ୍ୟକୀୟ କାର୍ଯ୍ୟର ଅନୁଷ୍ଠାନ ହୋଇପାରିବ । ଗୋଚର ସକାଶେ ଲେଖାଗଲା ।

। ଇତି ।

୨୯ ହିଁ ଡିସେମ୍ବର
ସନ ୧୮୭୧

ଜନ୍ ବୀମ୍‌ସ
କଲେକ୍ଟର

(ସୌଜନ୍ୟ : John Beames and Orissa)

❑ ❑ ❑

# ପରିଶିଷ୍ଟ


NORTHERN INDIA
1860—
Miles
TIBET
KASHMIR
PUNJAB
NORTH WEST PROVINCES
NEPAL
BHUTAN
BIHAR
BENGAL
ASSAM
BURMA
RAJPUTANA
CENTRAL INDIA STATES
CENTRAL PROVINCES
ORISSA
SIND
KATHIAWAR
AFGHANISTAN
BALUCHISTAN
HIMALAYA MTS.
Peshawar
Rawalpindi
Quetta
Karachi
Multan
Lahore
Sialkot
Gujrat
Jhelum
Ludiana
Ambala
Simla
Mussoorie
Meerut
DELHI
Bulandshahr
Bareilly
Agra
Jaipur
Bikanir
Jodhpur
Jhansi
Lucknow
Cawnpore
Allahabad
Gorakhpur
Ghazipur
Benares
Arrah
Patna
Monghyr
Bhagalpur
Motihari
Darbhanga
Purnea
Katmandu
Mt. Everest
Darjeeling
Sikkim
Shillong
Dacca
Chittagong
Cox's Bazar
Burdwan
CALCUTTA
Balasore
Cuttack
Puri
False Point
Jubbulpore
Nagpur
Bhopal
Indore
Ahmadabad
Baroda
Bombay
R. Indus
R. Sutlej
R. Ravi
R. Chenab
R. Jumna
R. Ganges
R. Ghagra
R. Brahmaputra
R. Narbada
R. Mahanadi

